ପ୍ରକାଶକ : ଅଭିରାମ ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ : ପ୍ରମୋଦ ମିଶ୍ର
ଜଗନ୍ନାଥ ପ୍ରିଣ୍ଟର୍ସ,ମେଛୁଆ ବଜାର, କଟକ

ପ୍ରଥମ ସଂସ୍କରଣ : ୧୯୮୮

ମୂଲ୍ୟ : ଟ ୪-୫୦

# ସୂଚୀ



—

# ଗଙ୍ଗାଜଳ ଦୂଷିତ ହେଲାଣି

ପ୍ଲସଟୁ ପାଠପଢ଼ା ପାଇଁ ସୁରେଶର କଲିକତା ଯିବାର ଥାଏ । ଆଗ ଦିନର ସଂଧ୍ୟା । ଦାଣ୍ଡ ପିଣ୍ଡାରେ ବସି ଅଜା ଚା' ପିଉଥାନ୍ତି । ପାଖରେ ଆଈ ବସିଥାନ୍ତି । ସୁରେଶ ତାଙ୍କ ପାଖରେ ବସି ତା' କଲିକତା ଯିବା ବିଷୟରେ କଥାବାର୍ତ୍ତା କରୁଥାଏ । ସେତିକିବେଳେ କୁନି ଆସି ସେଠାରେ ପହଞ୍ଚିଗଲା ।

ସେ ବଡ଼ ଢବଢବିଆ । ବହୁତ ଗପେ । ଆଈଙ୍କୁ କହିଲା— "ଭାଇ ପରା କଲିକତା ଯାଉଛନ୍ତି···ତମ ପାଇଁ କଣ ଆଣିବେ କହୁନା ।"

ସୁରେଶ ତାକୁ ଚିଡ଼େଇଲା ଭଳି କହିଲା—"ଅଃ··· ଆସିଗଲେ ଆମ ଘରର ହାକିମ । ଆଈଙ୍କୁ ଆଉ ସେ ବୁଦ୍ଧି ଦେଖାଯାଉନି··· ଗଲୁ ଏଠୁ··· ।"

କୁନି ତା' ପାଖକୁ ଲାଗି ବସିପଡ଼ି ଗେଲେଇ ହୋଇ କହିଲା— "ନା···ମୋତେ ଯିବନି··· ଏଇଠି ବସି ଶୁଣିବି । ତମେ ଆଈଙ୍କ ପାଇଁ ସତରେ କଣ ଆଣିବ କହିଲ ।"

ଭାଇ ଭଉଣୀଙ୍କ ମିଚ୍ଛିମିଚ୍ଛିକା କଳି ଦେଖି ଅଜା ଆଈ ହସୁଥାନ୍ତି । ଶେଷରେ ଆଈ କୁନିକୁ କହିଲେ—"ସେ ତ' ଏବେ ପ୍ଲସଟୁ ପାଇଁ ପରୀକ୍ଷା ଦେବାକୁ ଯାଉଛି—ତାକୁ ପୁଣି କ'ଣ ଆଣିବାକୁ କହିବି କାହିଁକି ? ଭଗବାନଙ୍କ ଦୟାରୁ ତାର ସେ ପ୍ଲସଟୁ ହୋଇଯାଉ । ସେ କଲିକତାରେ ରହିଲେ ମୋତେ ଥରେ ନେଇ ଗଙ୍ଗାରେ ବୁଡ଼ ପକେଇ ଆଣିବ ।"

ଆଈଙ୍କ ମୁହଁରୁ କଥା ନ ସରୁଣୁ କୁନି ତାଙ୍କୁ ଦୋହରେଇ ପଚାରିଲା —"କ'ଣ କହିଲ··· ଗଂଗାରେ ବୁଡ଼ ପକେଇବ···?"

ଆଈ—"ହଁ... ଗଙ୍ଗାରେ ବୁଡ଼ ପକେଇବି । ମୋର ସବୁ ପାପ ଧୋଇଯିବ ।"

କୁନି ହସି ହସି କହିଲା—"ବୁଢ଼ୀଲୋ ଆଈ, ସେକାଳ ଗଲାଣି । ଆମ ସାର୍ ପରା କହୁଥିଲେ, ଏବେ ଗଙ୍ଗାଜଳ ଦୂଷିତ ହୋଇଗଲାଣି । ସେଥିରେ ଗାଧୋଇଲେ, ସେ ପାଣି ପିଇଲେ ବିପଦ ।"

କୁନିର କଥା ଶୁଣି ଅଜା ଓ ଆଈ ଏକାଠି କହି ଉଠିଲେ—"କଣ କହିଲୁ... ?

କୁନି ଉତ୍ତର ଦେଲା—"ମୁଁ କଣ ମିଛ କହୁଛି ? ଭାଇଙ୍କୁ ପଚାରୁନା—ସେ ବି କହିବେ ।"

ଅଜା ଓ ଆଈ ତା କଥାକୁ ବିଶ୍ୱାସ କଲେନି । ସେମାନେ ସୁରେଶର ମୁହଁକୁ ଚାହିଁଲେ । ତେଣୁ ସୁରେଶ ମୁରୁକି ହସାଟିଏ ଦେଇ କହିଲା—"ହଁ, କୁନି ଯାହା କହୁଛି ଠିକ୍ । ଆମେମାନେ ତ' ଗଙ୍ଗାନଦୀକୁ ଗଙ୍ଗାମାତା ବୋଲି କହୁ । ତା' ଜଳକୁ ଅତି ପବିତ୍ର ବୋଲି ମାନି ଆସିଛୁ । ସେଥିରେ ଗାଧୋଇଲେ ରୋଗବ୍ୟାଧି ଦୂର ହୁଏ ବୋଲି ବିଶ୍ୱାସ କରୁ । ବୈଜ୍ଞାନିକମାନେ ବି' ଏ ଜଳର ବିଶେଷ ଗୁଣ ଥିବା କଥା ମାନୁଥିଲେ । କାରଣ, ସେଥିରେ ବିଭିନ୍ନ ରୋଗ ଜୀବାଣୁ ଅଧିକକାଳ ବଞ୍ଚିପାରୁନଥିବା ସେମାନେ ପରୀକ୍ଷା କରି ଦେଖିଥିଲେ । କିନ୍ତୁ ଏବେ ଅବସ୍ଥା ଓଲଟି ଯାଇଛି । ପୃଥିବୀର ଅଳ୍ପ କେତୋଟି ଅତିଦୂଷିତ ନଦୀମାନଙ୍କ ଭିତରୁ ଗଙ୍ଗା ହୋଇଛି ଗୋଟିଏ ।"

ଅଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ହଠାତ୍ ଏପରି ହେଲା କାହିଁକି ?"

ସୁରେଶ କହିଲା—"ଏହା ହଠାତ୍ ହୋଇନାହିଁ । ବର୍ଷପରେ ବର୍ଷ ଆମେ ଏହାକୁ ଦୂଷିତ କରି ଆସିଛୁ । ସବୁର ତ' ଗୋଟାଏ ସୀମା ଅଛି ! ଏବେ ସେ ସୀମା ଟପି ଯାଇଛି । ଆମ ପବିତ୍ର ଗଙ୍ଗାଜଳ ଅଶୁଦ୍ଧ ହୋଇଯାଇଛି ।"

ଅଜା—"ଏପରି କମିତି ହେଲା, ଠିକେ ବୁଝେଇ କହିଲୁ ।"

ସୁରେଶ—"ଆମ ଦେଶରେ ଲୋକଙ୍କର ବସବାସ ପ୍ରଥମେ ସିନ୍ଧୁ ଓ ଗଙ୍ଗାନଦୀ କୂଳରେହିଁ ଆରମ୍ଭ ହୋଇଥିଲା । କାରଣ, ସେତେବେଳେ ଲୋକମାନେ ଚାଷ କରି ଓ ଗୋଚାରଣ କରି ଚଳୁଥିଲେ । ଏ ଉଭୟ ପାଇଁ ଦରକାର ହେଉଥିଲା ପ୍ରଚୁର ପାଣି । ଆଉ କେତେକ



[ ଅଜା, ଆଈ ଓ ନାତି ନାତୁଣୀ କଥାବାର୍ତ୍ତା ହେଉଛନ୍ତି । ]

ଲୋକ ବେପାର ବଣିଜ କରୁଥିଲେ । ସେମାନେ ଜଳପଥ ଡଙ୍ଗାରେ ନିବା ଆଣିବା କରିବା ସୁବିଧା ହେଉଥିଲା । ତା'ଛଡ଼ା, ଗାଧୋଇବା, ପିଇବା ଓ ଅନ୍ୟାନ୍ୟ କାମ ପାଇଁ ମଧ୍ୟ ପାଣି ଦରକାର । ପରେ କଳକାରଖାନାମାନ ବସିଲା । ସେଥିଲେ ବି ପାଣି ଦରକାର ହେଲା । ତେଣୁ, ଏବେ ଗଙ୍ଗାନଦୀର ଦୁଇକୂଳ ଗାଁ-ଗଣ୍ଡା, ସହର ଓ କଳ କାରଖାନାରେ ଭରି ଯାଇଛି । ସାରା ଭାରତରେ ଏ ଅଞ୍ଚଳ ସବୁଠାରୁ ଜନବହୁଳ ।

"ଗଙ୍ଗାନଦୀ ହିମାଳୟ ପର୍ବତରୁ ବାହାରି ବଙ୍ଗୋପସାଗରରେ ପଡ଼ୁଛି । ଏହାର କୂଳରେ ଉତ୍ତର କାଶୀ, ଋଷିକେଶ, ହରଦ୍ୱାର, ଆହ୍ଲାବାଦ, ବାରାଣସୀ ଆଦି ବଡ଼ବଡ଼ ତୀର୍ଥସ୍ଥାନ ଓ ସହର ରହିଛି ।

ତା'ଛଡ଼ା କାନପୁର, ବାରାଣସୀ, ପାଟନା ଏବଂ କଲିକତା ଭଳି କଳକାରଖାନା ଭରା ସହର ମଧ୍ୟ ରହିଛି । ଏଇ କାରଖାନା ମାନଙ୍କର ଦୂଷିତ ପାଣି, ଅଳିଆ-ଆବର୍ଜନା, ବିଷାକ୍ତ ପଦାର୍ଥ ଇତ୍ୟାଦି ଗଙ୍ଗାଜଳରେ ମିଶେ । ସହରର ନାଳ ନର୍ଦ୍ଦମା ପାଣି ମଧ୍ୟ ସେଇ ନଈରେ ଛାଡ଼ି ଦିଆଯାଏ । ଏଣୁ ତାହା ଦୂଷିତ ହେଉଛି । ସେଥିପାଇଁ ଯେଉଁ ପାଣିରେ ୨୦।୨୫ ବର୍ଷ ତଳେ ଗାଧୋଇଲେ ରୋଗବ୍ୟାଧି ଦୂର ହେଉଥିଲା. ତାହା ଆଜି ସ୍ନାନ ପାଇଁ ଅନୁପଯୁକ୍ତ ହୋଇ ପଡ଼ୁଛି । ସେଥିରେ ବାସ କରୁଥିବା ମାଛ ଆଦି ଜଳଚର ଜୀବମାନଙ୍କ ସଂଖ୍ୟା କମିଗଲାଣି । କେତେକ



[ ଗଙ୍ଗା ନଦୀର ପାଣିରେ ସହରର ମଇଳା ପାଣି ଓ କଳକାରଖାନାର ପାଣି ଆସି ମିଶୁଛି । ]

ସ୍ଥାନରେ ତାହା ଲୋପ ପାଇବାକୁ ବସିଲଣି । ଏପରିକି ଗଙ୍ଗାଜଳ ମଡ଼ା ହେଉଥିବା କିଆରିର ମାଟି ନଷ୍ଟ ହୋଇ ଯାଉଛି । ଫସଲ ଭଲ ହେଉନାହିଁ ।”

ଅଜା ଏକ ଧ୍ୟାନରେ ସୁରେଶର କଥା ଶୁଣି ଯାଉଥିଲେ । ସେ ପଚାରିଲେ—“ସବୁ ବଡ଼ ବଡ଼ ନଦୀ କୂଳରେ ତ’ ଏମିତି ସହର ବଜାର ଓ କଳକାରଖାନା ରହିଛି । ତେବେ, କେବଳ ଗଙ୍ଗା ଏମିତି ଦୂଷିତ ହେଲା କାହିଁକି ?”

ସୁରେଶ—“ଅଜା ଠିକ୍ କଥା କହିଲ । କେବଳ ଗଙ୍ଗାନଦୀ ଦୂଷିତ ହୋଇନାହିଁ । ଏ ପୃଥିବୀର ଯେଉଁ ସବୁ ନଦୀ କୂଳରେ ବଡ଼ ବଡ଼ କଳକାରଖାନା ବା ବଡ଼ ବଡ଼ ସହର ରହିଛି, ସେ ସମସ୍ତେ ଏବେ ଦୂଷିତ । ତେଣୁ, ସେଗୁଡ଼ିକୁ ପରିଷ୍କାର କରିବାପାଇଁ ଏବେ କାମ ଚାଲିଛି । ଆମ ଦେଶରେ ଆହୁରି ଅନେକ ନଦୀ ମଧ୍ୟ ଦୂଷିତ ହୋଇ ସାରିଲେଣି । କିନ୍ତୁ, ତନ୍ମଧ୍ୟରୁ ଗଙ୍ଗାନଦୀ ପ୍ରଧାନ । ତେଣୁ, ଆଗେ ଏହାକୁ ପରିଷ୍କାର କରିବା ପାଇଁ ଆମ ସରକାର ଯୋଜନା କଲେଣି ।”

ଏତେ ବେଳ ଯାଏ ଅଜାଙ୍କ ମୁହଁରେ ହସ ନଥିଲା । କିନ୍ତୁ ଗଙ୍ଗାଜଳକୁ ବିଶୁଦ୍ଧ କରିବାକୁ ସରକାର ଯୋଜନା କରିବା କଥା ଶୁଣି ସେ ହଠାତ୍ ଖୁସି ହୋଇ ପଚାରିଲେ—“ଏତେ ବଡ଼ ନଦୀଟାକୁ ପରିଷ୍କାର କରାଯିବ କିପରି ? ସେଥିପାଇଁ ତ’ ଖୁବ୍ ପରିଶ୍ରମ ଓ ବହୁତ ଟଙ୍କା ଦରକାର ହେବ··· ।”

ସୁରେଶ—“ହଁ···ତାହାତ’ ନିଶ୍ଚୟ । ହେଲେ, ଅନ୍ୟ ଉପାୟ ଆଉ କ’ଣ ? ଏହିଭଳି ଦୂଷିତ ହୋଇ ଚାଲିଲେ, କିଛିଦିନ ପରେ ଗଙ୍ଗାର ଦୁଇ ପାଖରେ ଥିବା ଉର୍ବର ଜମି ମରୁଭୂମି ହୋଇଯିବ । ନଦୀର ଜଳଜନ୍ତୁ ସବୁ ଧ୍ୱଂସ ପାଇଯିବେ । ଏହାର ଜଳ ବ୍ୟବହାର କରୁଥିବା ମଣିଷ ଓ ପଶୁପକ୍ଷୀମାନେ ନାନା ରୋଗ ଭୋଗିବେ । ତେଣୁ ଏ ଯୋଜନା ସବୁଠାରୁ ଆଗେ କାର୍ଯ୍ୟକାରୀ ହେବା ଉଚିତ ।

ଅଜା କହିଲେ—"ହିଁ...ହିଁ, ଯାହାହେଉ ପଛେ, ଏ କାମ ଆଗ ହେବା ଦରକାର । ପାଣିପରି ଜୀବନ... । ନଦୀର ଜଳ ଦୂଷିତ ହେଲେ ଗୃହବାସ ହେବ କପରି ? ଜୀବଜନ୍ତୁ ବଂଶିବେ କପରି ?"

କୁନ ପଚାରିଲା—"ଦୂଷିତ ହୋଇଥିବା ଆଉ ସବୁ ନଦୀକୁ ପରିଷ୍କାର କରିବା କାମ କେବେ ହେବ ?"

ସୁରେଶ—"ସେଥିପାଇଁ ଏବେ ସମସ୍ତ ଠିକ୍ ହୋଇନାହିଁ ।" ସବୁ ନଦୀଗୁଡ଼ିକ ଏକା ସାଙ୍ଗରେ ପରିଷ୍କାର କରିବାକୁ ହେଲେ ବହୁତ ଟଙ୍କା ଦରକାର । ତେଣୁ, ଗୋଟି ଗୋଟି କରି ତାହା କରାଯିବ । ଗଙ୍ଗା ପରେ ଗୋଦାବରୀରେ ଏ ଯୋଜନା ଲାଗୁ କରିବାକୁ ବିଚାର କରାଯାଉଛି । ତା'ପରେ ଅନ୍ୟ ନଦୀଗୁଡ଼ିକର ପାଳି ପଡ଼ିବ ।"

ଅଜା—"ତା' ହେଲେ ତ' ସବୁ ନଦୀ ପାଇଁ ଢ଼େର ସମୟ ଲାଗିଯିବ । ସେତେବେଳକୁ ପରିଷ୍କାର ହୋଇଥିବା ନଦୀଗୁଡ଼ିକ ପୁଣି ଦୂଷିତ ହୋଇ ସାରିଥିବେ । କାରଣ. କଳକାରଖାନା ଓ ସହର ଗୁଡ଼ିକୁ ତ' ଆଉ ଉଠେଇ ଦେଇ ହେବନି... । ତେବେ, ଏକାମ ଏମିତି କ'ଣ ଖାଲି ଚାଲିଥିବ ?"

ସୁରେଶ -"ନାଁ... ସେଥିପାଇଁ ପରି ନଦୀ କୂଳରେ ଅଧିକ କଳକାରଖାନା ନବସାଇବାକୁ ନିୟମ ହେଉଛି । ଯାହାସବୁ ଅଛି, ସେଥିରୁ ବାହାରୁଥିବା ବିଷାକ୍ତ ଜିନିଷକୁ ମଧ୍ୟ ନଦୀରେ ମିଶିବା ଆଗରୁ ବିଶୁଦ୍ଧ କରାଯିବ । ତା'ହେଲେ ସେଗୁଡ଼ିକ ଆଉ ଅଧିକ ଦୂଷିତ ହେବ ନାହିଁ ।"

ଆଜ୍ଞା ଏଯାଏଁ ଚୁପ ହୋଇ ଶୁଣୁଥିଲେ । ସେ ସୁରେଶଙ୍କୁ ଚାହିଁ ପଚାରିଲେ—"ଆଚ୍ଛା, ଗଙ୍ଗାନଦୀର ଜଳକୁ ପରିଷ୍କାର କରିବା ପାଇଁ ଆଉ କେତେବର୍ଷ ଲାଗିଯିବ ?

ତାଙ୍କ ପାଟିରୁ କଥା ନ ସରୁଣୁ କୁନ କହି ଉଠିଲା—କାହିଁକି, ତା'ପରେ ତୁମେ ବୁଡ ପକାଇବାକୁ ଯିବ ବୋଲି ଭାବୁଚ ନା କ'ଣ ?

ତା' କଥାରେ ସମସ୍ତେ ହସି ଉଠିଲେ । ହସ ବନ୍ଦ ହେଲା ପରେ ସୁରେଶ କହିଲା—"ସେଥିପାଇଁ କେତେ ସମୟ ଲାଗିବ, ତାହା ଠିକ୍ ରୂପେ କହିହେବନି । ତେବେ, ଖୁବ୍ ମନ ଦେଇ କାମ ଯେତେବେଳେ ଜୋର୍‌ରେ ଆରମ୍ଭ ହେଲାଣି ନିଶ୍ଚୟ ଚଞ୍ଚଳ ସରିଯିବ ।"

ସେତେବେଳକୁ ଅନ୍ଧାର ହୋଇ ଆସିଥାଏ । ଅଜା ଭାଗବତ ଟୁଙ୍ଗୀକୁ ଯିବା ପାଇଁ ଉଠୁ ଉଠୁ କହିଲେ—"ତା'ହେଲେ ତ' ଭଲ ହେବ । ଆଗାମୀ ଆଜ କେତେ ବର୍ଷ ଭିତରେ ଆମେ ଆଜ୍ ଯେତେ ପାପ କରିବୁ, ତାକୁ ତ' ଏକାଥରକେ ଧୋଇ ଆସିବୁ······ ।"

ଏହା ଶୁଣି ସମସ୍ତେ ହସି ଉଠିଲେ ।



# ଡାହାଣୀ ଆଲୁଅ

ବାବୁଲି କଥାରେ ଟୁକୁଲି ବିଶ୍ୱାସ କଲାନି । ସେ ଓଲଟି ପଚାରିଲା —"ମଣିଷ ମଲା ତ' ଗଲା··· । ତା'ପରେ ପୁଣି ଗୋଟାଏ ଭୂତ କି ଡାହାଣୀ ହବ କ'ଣ ? ଏଗୁଡ଼ାକ ଖାଲି ଭୁଲ ଧାରଣା । ଆଜି କାଲି ଆଉ କ'ଣ କେହି ଏକଥା ମାନୁଚନ୍ତି ?"

ବାବୁଲି କିଛି ଉତ୍ତର ନ ଦେଇ ଚୁପ୍ ହୋଇଗଲା । କାରଣ, ଟୁକୁଲି ତା'ଠାରୁ ବେଶି ପଢ଼ିଛି । ପୁଣି ତାଙ୍କ ପଡ଼ିଶା ରାମବାବୁ ଗାଁ ସ୍କୁଲର ବିଜ୍ଞାନ ଶିକ୍ଷକ । ସେ ଲେଖାରେ ତାର ଭାଇ ହେବେ । ସେ ବେଳେ ବେଳେ ତାଙ୍କ ପାଖରେ ବସାଉଠା କରେ । ତାଙ୍କଠାରୁ ବିଜ୍ଞାନ କଥା ଶୁଣେ । ତେଣୁ ତା' କଥା କାଟି ପାରିଲା ନାହିଁ । ହେଲେ ମନଟା ତାର ଖାଲି ଗୋଳେଇ ଘାଣ୍ଟି ହେଉଥାଏ । ଦେଖିଲା କଥାକୁ ଅବିଶ୍ୱାସ କରନ୍ତା କିପରି ? ନିଜ ଆଖିରେ ପରା ସେ ଦେଖିଛି ଡ଼ାହାଣୀକୁ··· ।

ଗଲା ରାତିରେ ସେ ପଲାରେ ବସି ଆଖି ଜଗିଥାଏ । ଡ଼ାହାଣୀଟା ଦପ୍ ଦପ୍ ଆଲୁଅ କରି ସେଠାରେ ଘଣ୍ଟା ଘଣ୍ଟା ଧରି ବୁଲୁଥିଲା । ହେଲେ, ସେକଥାକୁ ତ ଟୁକୁଲି ବିଶ୍ୱାସ କରୁନି, ସେ ଏବେ କରିବ କଣ ? ତେଣୁ ସେ ଶେଷକୁ କହିଲା—"ଯଦି ମୋ' କଥାରେ ବିଶ୍ୱାସ ନ ହେଉଚି ତେବେ, ଆଜି ରାତିରେ ମୋ ସାଙ୍ଗରେ ଚାଲ୍ । ମୁଁ ତୋତେ ଆଖିରେ ଦେଖାଇ ଦେବି ।"

ଟୁକୁଲି ଏକଥାରେ ରାଜି ହୋଇଗଲା । ଦୁହେଁ ସନ୍ଧ୍ୟାବେଳୁ ଖାଇ ପିଇ ସାରି ପଲାରେ ବସି ରହିଲେ ।

ସେ ଦୁହେଁ ପିଲା ଦିନରୁ ସାଙ୍ଗ । ଏକାଠି ପଢ଼ୁଥିଲେ । ବାବୁଲିର ବାପା ଏକୁଟିଆ ମଣିଷ । ତେଣୁ ତାକୁ ବେଶି ନ ପଢ଼ାଇ ଚାଷରେ

ଲଗାଇଦେଲେ । ଟୁଲୁଲ୍ ଟିକେ ଅଧିକା ପଢ଼ିଲା । ମାଟ୍ରିକ୍ ପାଶ୍ କଲା । ଚାକିରି କରି ପର ପାଖରେ ମୁଣ୍ଡ ଗୁଞ୍ଜିବାକୁ ସେ ପସନ୍ଦ କଲାନାହିଁ । ଜମିବାଡ଼ି ତ' ଅଛି—ସେ ତ' ଏବେ କୃଷି କାମରେ ଲାଗିଛି ।

ରାତି ହେଲା । ଥଣ୍ଡା ପବନରେ କେତେବେଳେ ସେ ବୁହିଁଙ୍କ ଆଖିପତା ଲାଗି ଯାଇଥାଏ । ହଠାତ୍ ଗୋଟାଏ ବିକଟାଳ ଖେଁ···ଖେଁ ଶବ୍ଦରେ ଦୁହେଁ ଚମକି ଉଠିଲେ । ଶବ୍ଦଟା ଆସୁଥିଲା ଆଖୁ କିଆରୀ ଆର ପାଖରୁ । ଦୁହେଁ ଆଖି ମଳି ମଳି ସେ ଆଡ଼କୁ ଚାହିଁଲେ । ଦେଖିଲେ ଗୋଟିଏ ନୁହେଁ ଦୁଇଦୁଇଟା ଆଲୁଅ ଦପ୍ ଦପ୍ ହୋଇ ଜଳିଉଠୁଛି, ପୁଣି ଲିଭି ଯାଉଛି ଏବଂ ଏଣେ ତେଣେ ଧାଉଁଛି । ଭୟରେ ସେମାନେ ପଲର ତାଟି ବନ୍ଦ କରିଦେଲେ ।



[ ପଲରେ ଟୁଲୁଲ୍ ଓ ବାବୁଲ ]

ଏହା ପରେ ଟୁଲୁଲର ଆଉ ଅବିଶ୍ୱାସ ରହିଲା ନାହିଁ । ତା' ମନଟା ଗୋଳମାଳିଆ ଧରିନେଲା । ରାମଭାଇ କହୁଥିଲେ ଭୂତ ପ୍ରେତ ଡାହାଣୀ ବୋଲି କିଛି ନାହିଁ । ତେବେ ଏଗୁଡ଼ାକ କ'ଣ ? ତାକୁ ସାହସ ଦେବା ପାଇଁ

ଯେ ଆଜ ମିଛରେ କହୁ ନଥିଲେ ତ ? କିଛି ଠିକ୍ କରି ନପାରି ସେ ବାବୁଲ୍‌କୁ କହିଲା—"ରାମଭାଇଙ୍କଠାରୁ ଶୁଣିଥିଲି ଯେ, ଭୂତ ଡାହାଣୀ ବୋଲି କିଛି ନାହାନ୍ତି । ଆଜ ଆଖିରେ ଦେଖିଲା କଥାକୁ ଅବିଶ୍ୱାସ କରିବି କିପରି ? ସକାଳ ହେଉ । ତାଙ୍କୁ ଏକଥା କହିବା । ସେଥିରେ ଆଉ କିଛି ଯଦି ଥାଇପାରେ··· ।

ଏ କଥାରେ ବାବୁଲ୍ ରାଜି ହେଲା । ଦୁହେଁ ଶୋଇବାକୁ ଗଲେ । ହେଲେ ଆଖିକୁ ମୋଟେ ନିଦ ଆସୁନଥାଏ । ରାତି ଭଲ କରି ନପାହୁଣୁ ଦୁହେଁ ଯାଇ ରାମବାବୁଙ୍କ ଘରେ ହାଜର । ସେ ଖୁବ୍ ଜଲ୍‌ଦି ଉଠନ୍ତି । ସେତେ-ବେଳକୁ ରାମବାବୁ ଦାନ୍ତପଛ ଘଷି ସାରି ଚା' ପିଉଥାନ୍ତି । ଏ ଦୁହିଁଙ୍କୁ ଦେଖି ପଚାରିଲେ—"କିରେ, ଏତେ ସକାଳୁ କୁଆଡ଼େ ?"

ତାଙ୍କ କଥାର କିଛି ଯବାବ୍ ନଦେଇ ଟୁକୁଲ୍ ଓ ବାବୁଲ୍ ଜଣେ ଅନ୍ୟର ମୁହଁକୁ ଅନେଇ ମୁରୁକି ମୁରୁକି ହସିଲେ । ତେଣୁ ରାମବାବୁ ପୁଣି ପଚାରିଲେ—"କିଛି କହୁନା ଯେ···?"

ଟୁକୁଲ୍ ଟିକିଏ କୁଣ୍ଠିତ ହେଲା ପରି କହିଲା—"ଯେଉଁଥି ପାଇଁ ଆସିଛୁ ସେକଥା କହିଲେ ତମେ ହସରେ ଉଡ଼େଇଦେବ । ମୋର ବି' ସେଥିରେ ବିଶ୍ୱାସ ନଥିଲା । ହେଲେ କାଲି ରାତିରେ ନିଜ ଆଖିରେ ପରା ଦେଖିଛୁ । ସେଇଥି ପାଇଁ ଏତେ ସକାଳୁ ତୁମ ପାଖକୁ ଧାଇଁଆସିଛୁ ।"

ରାମବାବୁ—"କି କଥା କୁହ··· "

ଟୁକୁଲ୍—"ତମେ ପରା କହୁଥିଲ, ଭୂତ କି ଡାହାଣୀ ବୋଲି କିଛି ନାହାନ୍ତି । କିନ୍ତୁ, କାଲି ରାତିରେ ମୁଁ ବାବୁଲ୍ ସାଥିରେ ତାଙ୍କ ଆଖୁ କିଆରୀକୁ ଯାଇଥିଲି ଡାହାଣୀ ଦେଖିବାକୁ । ଦେଖିଲି ବି'··· "

ରାମବାବୁ ହସି ପଚାରିଲେ—"କମିତିକା ଡାହାଣୀ ସେ··· ?"

ଟୁକୁଲ୍ ଗମ୍ଭୀର ଭାବେ କହିଲା—"ସତ କହୁଛି ରାମଭାଇ, ବିଶ୍ୱାସ କର । ଗୋଟାଏ ନୁହେଁ ଦୁଇଟା··· । ତାଙ୍କ ଆଖୁ କିଆରୀ ପାଖରେ

ଦପ୍ ଦପ୍ ଆଲୁଅ ଜାଳି, ଝେଁ···ଝେଁ···ଶବ୍ଦ କରି ବୁଲୁଥିଲେ । ଉପରେ ଆମେ ପଲର ଚାରିଟି ବନ୍ଦ କରିଦେଲୁ । ତାଙ୍କ ରୂପ ଆଜି ଦେଖିଲୁ କିପରି ?"

ଏକଥା ଶୁଣି ରାମବାବୁ ହୋ···ହୋ··· ହୋଇ ହସି ଉଠିଲେ । ବାବୁଲା ଓ ଟୁକୁନା ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଅନେଇଥାନ୍ତି । ହସ ବନ୍ଦ କରି ସେ କହିଲେ—"ହଉ ହେଲା, ତୁମେ ଯାଅ । ଆଜି ରାତିରେ ମୁଁ ତୁମ ପାଇଁ ସେ ଡାହାଣୀରୁ ଗୋଟିଏ ଦୁଇଟି ଧରି ଆଣିବି । କାଲି ସକାଳୁ ତା'ରୂପ ଦେଖିବ । ବ୍ୟସ୍ତ କାହିଁକି ?"

ଟୁକୁଲା ଓ ବାବୁଲା ରାମବାବୁଙ୍କ ମୁହଁକୁ ବୋକାଙ୍କ ପରି ଚାହିଁଥାନ୍ତି । ତାଙ୍କ କଥାରେ ସେମାନଙ୍କର ବିଶ୍ୱାସ ଆସୁ ନଥାଏ । ତେଣୁ, ରାମବାବୁ ପୁଣି କହିଲେ—"କହିଲି ଘରେ ଯାଅ··· କାଲି ସକାଳେ ପୁଣି ଏ ବିଷୟରେ କଥାବାର୍ତ୍ତା · · · ।"

ତା'ପରେ ସେ ଦୁହେଁ ଚୁପ୍ ଚାପ୍ ଚାଲିଆସିଲେ ।

ପରଦିନ ବଡ଼ି ସକାଳୁ ରାମବାବୁ ଯାଇ ଟୁକୁଲାକୁ ଉଠେଇ ଦେଇ କହିଲେ—"ଉଠ୍ · · · ଡାହାଣୀ ଦେଖି ଯିବୁ ଚାଲ · · · ।" ଟୁକୁଲା ଧଡ଼ପଡ଼ ହୋଇ ଉଠିଲା । ରାମବାବୁଙ୍କ ସାଥୀରେ ବାବୁଲା ଘରକୁ ଗଲା । ବାବୁଲା ସେତେବେଳକୁ ଉଠିସାରିଥାଏ । ସମସ୍ତେ ଏକାଠି ଗଲେ ଆମ୍ବ କିଆରୀକୁ । ଦେଖିଲେ ବଲୁଆଟାଏ ଯନ୍ତାରେ ପଡ଼ିଛି । ଏତେ ଲୋକଙ୍କୁ ପାଖରେ ଦେଖି ସେ ଝେଁ · · · ଝେଁ ହୋଇ ଶବ୍ଦଟାଏ କଲା । ବାବୁଲା ଓ ଟୁକୁଲା ଚମକି ପଡ଼ିଲେ । ସେଦିନ ରାତିରେ ସେମାନେ ତ' ଏହିପରି ଶବ୍ଦ ଶୁଣିଥିଲେ · · · । ଏହା ଦେଖି ରାମବାବୁ ହସି ଉଠି କହିଲେ—"ଏଥର ତମ ଡାହାଣୀର ରୂପ ଦେଖିଲ ତ ?"

ବାବୁଲା ଓ ଟୁକୁଲା ବୋକାଙ୍କ ଭଳି ତାଙ୍କ ମୁହଁକୁ ଚାହିଁଲେ । ତେଣୁ ରାମବାବୁ ପୁଣି କହିଲେ—"ଏଇଟାରି ତୁମ ଡାହାଣୀ · · · "

ଟୁକୁଲା ଓ ବାବୁଲା ଏକାଠି ପ୍ରତିବାଦ କଲେ—"ନା · · ·



[ ଆଖୁ କିଆରୀରେ ବିଲୁଆ ଯନ୍ତାରେ ପଡ଼ିଛି ]

ନା · · · ଆମେ ଦୂରୁ ଦେଖିଛୁ । ତାଙ୍କର ଆଲୁଅ ଦପ୍ ଦପ୍ ହୋଇ ଜଳୁଥାଏ, ପୁଣି ଲିଭୁଥାଏ ।”

ରାମବାବୁ—“ହଁ ବାବା · · · ହେଲା · · · ! ଏହାର ପାଟିରୁ ରାତିରେ ଆଲୁଅ ବାହାରେ । ବୁଝିଲ · · · ?”

ଟୁକୁଲ ଓ ବାବୁଲ ଏକ ସ୍ୱରରେ ପଚାରି ଉଠିଲେ—“କାହିଁକି ?”

ରାମବାବୁ—“ଏ ବର୍ଷ ଆମ ସ୍କୁଲର ବିଜ୍ଞାନ ମେଳା ଦେଖିବାକୁ ଯାଇଥିଲ ?”

ଟୁକୁଲ ଓ ବାବୁଲ ଏକାଠି ହଁ ଭରିଲେ ।

ରାମବାବୁ—ସେଥିରେ “ପାଣିରୁ ନିଆଁ” ବୋଲି ଖେଳଟିଏ ଦେଖାଯାଉଥିଲା—ମନେଅଛି ?”

ବାବୁଲର ମନେନଥିଲା । ସେ ଚୁପ୍ ରହିଲା । ଟୁକୁଲି ପଚାରିଲା କହିଲା—"ମେଳା ଭିତରକୁ ପଶିଲା ବେଳକୁ ଆଗ ସେଇଠା ଘଟୁଥିଲା ତ' ?"

ରାମବାବୁ—"ହଁ... । ତେବେ, ସେ ଖେଳଟି କ'ଣ ମନେ ରଖିଚୁ କହିଲୁ ।"

ଟୁକୁଲି—"ଗୋଟିଏ ଚୁଇନା ମାଟିର ଛାଟିଆରେ ପାଣିନେଇ ପିଲାଟି କାଚନଳୀରେ ଫୁଙ୍କୁଥିଲା । କିଛି ସମୟ ପରେ ପାଣି ଶୁଖିଗଲେ ସେଥିରେ ନିଆଁ ଲାଗିଯାଉଥିଲା ।"

ରାମବାବୁ—"ଠିକ୍ ମନେରଖିଛୁ । କିନ୍ତୁ ପ୍ରକୃତରେ ଚୁଇନା ମାଟିର ଛାଟିଆରେ ଥିବା ଜିନିଷଟି ପାଣି ନୁହେଁ । ତାହା ଆଉ ଗୋଟିଏ ତରଳ ପଦାର୍ଥ । ଏହାକୁ ବାହାରେ ରଖିଲେ ଉଡ଼ିଯାଏ । ସେଥିରେ କିଛି ଫସ୍‌ଫରସ୍ ମିଶିଥିଲା । ତେଣୁ କିଛି ସମୟ ଫୁଙ୍କିବାରୁ ସେଥିରୁ ତରଳ ଜିନିଷଟି ଉଡ଼ିଗଲା—ରହିଗଲା ଖାଲି ଫସ୍‌ଫରସ୍ । ଏଥିରେ ପବନ ବାଜିଲେ ଜଳି ଉଠେ । ତେଣୁ, ସେଥିରେ ନିଆଁ ଲାଗିଗଲା । ଫସ୍‌ଫରସ୍ ଭଳି ପବନରେ ନିଆଁ ଧରୁଥିବା ଭଳି ଜିନିଷ ଆହୁରି ଅନେକ ଅଛନ୍ତି । ବିଲୁଆ ପାଟିର ଲାଳରେ ସେହିପରି ଜିନିଷ ଥାଏ । ସେ ଯେତେବେଳେ ପାଟି ମେଲା କରେ ତହିଁରେ ପବନ ଲାଗେ । ତେଣୁ ତାହା ନିଆଁଭଳି ଜଳି ଉଠେ । ଏ ନିଆଁ କିନ୍ତୁ ସାଧାରଣ ନିଆଁ ଭଳି ଗରମ ନୁହେଁ । ତେଣୁ ତାହାକୁ 'ଶୀତଳ ନିଆଁ' ବୋଲି ମଧ୍ୟ କହନ୍ତି ।"

ଏଥର ଟୁକୁଲା ଓ ବାବୁଲା ନିଜନିଜର ଭୁଲ ବୁଝି ପାରିଲେ । ବୋକାମୀ ପାଇଁ ଜଣେ ଆଉ ଜଣକ ମୁହଁକୁ ଚାହିଁ ମୃଦୁକ ହସାଟିଏମାନ ଦେଲେ । ତା'ପରେ ଟୁକୁନା କହିଲା—ଦେଖିଲୁ ବାବୁଲା, ମୁଁ ଆଗେ ଯାହା କହୁଥିଲି ଠିକ୍ କି ନୁହେଁ ? ମଶାଣିରେ ବି ତୁ ଏଇ ବିଲୁଆଙ୍କ ଆଲୁଅ ଦେଖି ଡ଼ାହାଣୀ ବୋଲି ଭାବୁଥିଲୁ ... ।"

ବାବୁଲି ମୁଣ୍ଡ ଟୁଙ୍ଗାର ହଁ ଭରିଲା । କିନ୍ତୁ ରାମବାବୁ ମନା କଲେ । ସେ କହିଲେ—"ମଶାଣିର ସବୁ ଆଲୁଅ ବିଲୁଆଙ୍କର ନୁହେଁ ।"

ଟୁକୁଲ ଓ ବାବୁଲ ଆଶ୍ଚର୍ଯ୍ୟ ହୋଇ ଏକାଠି ପଚାରିଲେ—"ତେବେ… ?"

ରାମବାବୁ—"ସେଥିରୁ କେତେକ ଆଲୁଅ ମଲାମଣିଷଙ୍କ ହାଡ଼ରୁ ବି ବାହାରିଥାଏ । ଆମ ହାଡ଼ରେ ଫସ୍‌ଫରସ୍ ରହିଛି । ଏଣୁ ତାହା ମାଟିରେ ମିଶିଗଲେ କେବଳ ଫସ୍‌ଫରସ୍ ରହିଯାଏ । ସେଥିରେ ପବନ ଲାଗିଲେ ତାହା ଦପ୍ ଦପ୍ ହୋଇ ଜଳେ ।"

ଟୁକୁଲ—"ସେ ଯାହାହେଉ…ଡାହାଣୀ ବୋଲି ଯେ ଗୋଟାଏ କିଛି ନାହିଁ… ଏକଥା ତ ସତ… ?"

ରାମବାବୁ—"ନିଶ୍ଚୟ … ସେଥିରେ ସନ୍ଦେହ କଣ ଅଛି ?"

ବାବୁଲ—"ତା'ହେଲେ ସେ ଆଲୁଅ ଖାଲି ରାତିରେ ଦେଖାଯାଏ କାହିଁକି ?

ରାମବାବୁ ହସିଲେ । କହିଲେ—'ଏଇଟା ତ ଅତି ସାଧାରଣ କଥା । କହିଲୁ ଦେଖି ଦିନରେ ତାରାମାନେ ଦେଖା ଯାଆନ୍ତି ନାହିଁ କାହିଁକି ?

ବାବୁଲ କହିନପାରି ଚୁପ୍ ରହିଲା । ତେଣୁ ଟୁକୁଲ କହିଲା—"ଦିନରେ ସୂର୍ଯ୍ୟ ଥାଏ । ତା' କିରଣ ବେଶି ହୋଇଥିବାରୁ ତାରାମାନେ ଆଖିକୁ ଦିଶନ୍ତି ନାହିଁ ।"

ରାମବାବୁ—"ଏହାର କାରଣ ବି ଠିକ୍ ସେଇଆ । ଦିନରେ ସୂର୍ଯ୍ୟର ଆଲୋକ ଯୋଗୁ ତାହା ଦିଶେ ନାହିଁ । ସେଥିପାଇଁ ଅନ୍ଧାର ରାତିରେ ସେ ଆଲୁଅ ଭଲଭାବେ ଦେଖାଯାଏ ।"

ଏତକ କହିସାରି ରାମବାବୁ ଚୁପ୍ ହୋଇ ବସି ପଡ଼ିଲେ । ସେଇ ଅବସରରେ ଟୁକୁଲ ପଚାରିଲା—"ରାମଭାଇ, ବାଲୁଆ ପାଣିରେ ଥିବା ସେ ଜିନିଷଟି କ'ଣ—ସେ କଥା ତ କହିଲ ନାହିଁ … ।"

ରାମଭାଇ କହିଲେ—"ସେଇଟି ହେଲା "ଲୁସିଫେରିନ୍" । ବାଲୁଆ ପାଣିରେ ତା' ସହ ମିଶିଥାଏ । "ଲ୍ୟୁସିଫେରଜ୍" ବୋଲି

ଆଉ ଗୋଟିଏ ଜିନିଷ । ସେ ଦୁଇଟି ଏକାଠି ଥିଲେ, ପବନ ଲାଗିଲେ ସେଥିରୁ ସହଜରେ ଆଲୁଅ ବାହାରେ ।”

ବାବୁଲା–“ଅନ୍ୟ ଜୀବଙ୍କ ଠାରେ କ’ଣ ଏପରି ଜିନିଷ ନଥାଏ ?”

ରାମବାବୁ—“ହଁ · · · ରାତିରେ ଏପରି ଆଲୁଅ କରୁଥିବାର ଆହୁରି ଅନେକ ଜୀବ ଅଛନ୍ତି । ସେମାନଙ୍କ ଭିତରୁ ସମୁଦ୍ରରେ ଥିବା କେତେକ ଜୀବାଣୁ ଓ ମାଛ ଆଦି ପ୍ରଧାନ । ରାତିରେ ସମୁଦ୍ର ପାଣି ଚହଲି ଗଲେ ତାହା ନିଆଁ ଝୁଲ ପରି ଚକ୍ ଚକ୍ କରେ । କାରଣ ସମୁଦ୍ରର ଏଇ ଜୀବମାନଙ୍କଠାରୁ ସେ ଜିନିଷ ସବୁ ସମୁଦ୍ର ପାଣିରେ ମିଶିଥାଏ । ତା’ଛଡ଼ା ଜୁଳୁଜୁଳା ପୋକ ତ’ ତମେ ସବୁଦିନେ ଦେଖୁଛ ।”

ଏତକ କହି ସାରି ରାମବାବୁ ହାତ ଘଡ଼ିକୁ ଚାହିଁଲେ । ସେତେବେଳକୁ ଦିନ ନ’ଟା ବାଜିସାରିଥାଏ । ଏବେ ଖିଆପିଆ କରି ସ୍କୁଲକୁ ଯିବାକୁ ପ୍ରସ୍ତୁତ ହେବାକୁ ପଡ଼ିବ । ସେକଥା କହି ଦେଇ ସେ ଉଠିଲେ । ଉଠୁ ଉଠୁ କହିଲେ “ଏବେ ବିଲୁଆଟାକୁ ଛାଡ଼ ଦେବା ନା’ ରାତିରେ ତା’ ଆଲୁଅ ଦେଖିବା ପାଇଁ ରଖିବା ?”

ଟୁକୁଲି ଓ ବାବୁଲା ଏକାଠି କହି ଉଠିଲେ—“ନା · · · ତାକୁ ଛାଡ଼ ଦେବା । କଥାଟା ତ’ ବୁଝିଲୁ—ମିଛଟାରେ ଜୀବଟାକୁ ଧରି ରଖି କଷ୍ଟ ଦେବା କାହିଁକି ?

ରାମବାବୁ—ହଁ · · · ଠିକ୍ କଥା । ତେବେ ଯାଅ ଯନ୍ତା ମୁହଁଟା ଖୋଲି ଦେବ । ବରଂ ଆଜି ମୁଁ ଟିକିଏ ଫସ୍‌ଫରସ୍ ଆଣି ରାତିରେ ଡାହାଣୀ ଆଲୁଅ’ କରି ତୁମକୁ ଦେଖାଇବି · · · ।

—— ।

# କୂଅ ଭିତରେ ସଇତାନ

ଟିମି ଧଇଁସଇଁ ହୋଇ ଘର ଭିତରକୁ ପଶି ଆସିଲା । ଖଟ ଉପରେ ବହି ମୁଣାଟା ପକେଇ ଦେଇ ବସି ପଡ଼ି ପଡ଼ି ମା'ଙ୍କୁ କହିଲା—“ଜାଣିଛ ମା, ଆମ ଗାଁ ହରିଜନ ସାହିର ଭଙ୍ଗା କୂଅରେ ସଇତାନ ଅଛି । ସେ ଆଜି ତିନିଜଣ ଲୋକଙ୍କୁ ମାରି ରକ୍ତ ପିଇ ଦେଇଛି ।”

ମା' ଚମକି ପଡ଼ିଲେ । ପଚାରିଲେ—“କିଏ କହିଲା ?”

ଟୁକୁନା ବି ସେଠାରେ ଥାଏ । ଦୁହେଁ ତଳ ଉପର ଭାଇ ଭଉଣୀ । ଟିମି କିଛି ଉତ୍ତର ଦେବା ଆଗରୁ ସେ ତାକୁ ଚିଡ଼େଇ କରି କହିଲା—“କିରେ, ସଇତାନ ପୁଣି ଗୋଟାଏ କି ଜନ୍ତୁ ?”

ତା' କଥାରେ ଟିମି ଚିଡ଼ିଗଲା । ମା' ବି ବିଗିଡ଼ିଗଲେ । କହିଲେ—“ସବୁବେଳେ ସେମିତି ଚେଙ୍ଗେଲିଆ କଥା କହିବା ଭଲ ନୁହେଁ । ପିଲାଟା କ'ଣ କହୁଛି ଶୁଣ୍ ... ।”

ମା'ଙ୍କ ସମର୍ଥନ ପାଇ ଟିମି ଆରମ୍ଭ କଲା—“ସ୍କୁଲରୁ ଫେରିଲା ବାଟରେ ଆମେ ଦେଖି ଆସିଲୁ ଯେ । ସେ କୂଅ ମୁଣ୍ଡପାଖରେ ବହୁତ ଲୋକ ଜମା ହୋଇଛନ୍ତି । ଭୟରେ କେହି ପାଖକୁ ଯାଉ ନାହାନ୍ତି । ତାଙ୍କ ଘରଲୋକେ ସବୁ କାନ୍ଦୁଛନ୍ତି । ଆମ ସାଥିରେ ବଡ଼ ଗୁରୁଜୀ ଆସୁଥିଲେ । ଜଣଙ୍କୁ ଡାକି ପଚାରିବାରୁ ସେ କହିଲା ଯେ, ମଧୁମାଝିର ସାନ ପୁଅ କୂଅ ଉପରେ ଠିଆ ହୋଇ ପାଖ ଗଛରୁ ଆମ୍ବ ପାରୁଥିଲା । ତା' ଗୋଡ଼ ଖସି ଯିବାରୁ ଭିତରକୁ ଗଳି ପଡ଼ିଲା । ଅନ୍ୟ ପିଲାସବୁ ପାଟି କଲେ । ଲୋକେ ଦଉଡ଼ି ଆସିଲେ । ପିଲାଟିକୁ କାଢିବା ପାଇଁ ଶୁକୁଟା ମାଝି ଓ ରୂପ ସେନା କୂଅ ଭିତରକୁ ପଶିଲେ ଯେ ଆଉ

ବାହାରିଲେ ନାହିଁ । ସଇତାନ ସେ ସମସ୍ତଙ୍କୁ ମାରି ଦେଇଛି । ପୁଲିସ ଥାନାକୁ ପରା ଖବର ଗଲାଣି··· ।"

ମା'ଙ୍କ ଭୟରେ ଝୁଲୁନା ଏଯାଏ ସମ୍ଭାଳି ହୋଇଥିଲା । ହେଲେ ଟିମିର ଶେଷ କଥା ପଦକ ଶୁଣି ଫେଁ···ଫେଁ··· ହୋଇ ହସି ପକାଇ କହିଲା—"କରେ, ପୋଲିସ ଆସି ସଇତାନକୁ ବାନ୍ଧିନେବ ନା' କ'ଣ ?"

ମା' ଶୁଣି ବିଗିଡ଼ି ଯାଇ କହିଲେ—"ବଦମାସ୍, ଏଠି ବଡ଼ ବିପଦ···ଯ୍ୟାଁକୁ ହସ ଲାଗୁଛି ।"

ଝୁଲୁନା ନିଜର ଭୁଲ ବୁଝିପାରି ଦବିଗଲା । ଟିମି ଏହାର ସୁଯୋଗ ନେଲା । କହିଲା—"ହଉ, ମୋ' କଥାକୁ ବିଶ୍ୱାସ ନ କଲେ ନାହିଁ···, ବଳେ ଆଉ ଘଣ୍ଟାକୁ ସବୁ ଜାଣିବ ଯେ' !"

କିଛି ସମୟ ପରେ ପୋଲିସ ଦଳ ଆସି ଗାଁରେ ପହଞ୍ଚିଗଲେ । ଦମକଳ ବାଲାଙ୍କ ପାଖକୁ ଖବର ଗଲା । ସେମାନେ ଆସି ମୁହଁରେ ମୁଖା ଦେଇ କୂଅ ଭିତରେ ପଶିଲେ । ଗୋଟି ଗୋଟି କରି ଶବଗୁଡ଼ିକୁ କାଢ଼ି ଆଣିଲେ । ତା'ପରେ ଇନସ୍‌ପେକ୍ଟର ସେମାନଙ୍କ ମରିବା ବିଷୟରେ ପଚରାଉଚରା କରିସାରି ଶବ ଗୁଡ଼ିକୁ ଡ଼ାକ୍ତରମାଇନା ପାଇଁ ପଠାଇ ଦେଲେ । ଗଲାବେଳେ ସେ କହିଗଲେ—କୂଅଟାକୁ ଶୀଘ୍ର ପୋତି ପକାଇବାକୁ ।

କୂଅରେ ଯେ ସଇତାନ ଥିଲା, ଏଥିରେ ଆଉ କାହାରି ସନ୍ଦେହ ରହିଲା ନାହିଁ । ହେଲେ, ସଇତାନ ସେଠାକୁ ଆସିଲା କିପରି ? ନାନା ଲୋକ ନାନା ମତ ଦେଲେ । କିନ୍ତୁ ଗେଡ଼ି ଅବଧାନଙ୍କ କଥାକୁ ବେଶି ଲୋକ ପରତେ ଗଲେ । ସେ କହିଲେ ଯେ, କୂଅ ଖୋଳା ହେବାର ଅନେକ ଆଗରୁ ସେଠାରେ ମଶାଣି ଥିଲା । ବହୁଦିନ ତଳେ ଗାଁର ଜଣେ ଲୋକ ଦଉଡ଼ି ଲଗାଇ ମରିଥିଲା । ପୋଲିସ ଭୟରେ ତରତର ହୋଇ ତାର ଶବ ସେଇଠି ପୋତି ଦିଆ ଯାଇଥିଲା । ଏଣୁ ତା' ଆତ୍ମାର ଶାନ୍ତି ପାଇଁ କିଛି କର୍ମ ହୋଇନଥିଲା । ସେଇ ସଇତାନ ହୋଇ କୂଅରେ ରହିଛି ।



[ ଦମକଲବାଲା ଉଦ୍ଧାର କରୁଛନ୍ତି ]

ତାଙ୍କ କଥାକୁ ପ୍ରମାଣ କରିବାକୁ ଅବଧାନେ ପୁଣି କହିଲେ ଯେ—"ଏହି କାରଣରୁ କୂଅ ଖୋଳା ହେବାର ଅଳ୍ପ ଦିନ ଭିତରେ କୂଅ ପାଣି ଦୁର୍ଗନ୍ଧ ହୋଇଗଲା ।"

ଗାଁର ଅନେକ ଲୋକ ଅବଧାନଙ୍କ କଥାକୁ ବିଶ୍ୱାସ କଲେ । ମାତ୍ର ଟୁକୁନା ଏଥିରେ ମୋଟେ ପରତେ ଗଲାନାହିଁ । ଦଶହରା ଛୁଟିରେ ଭାଇଙ୍କର ଘରକୁ ଆସିବାର ଥାଏ । କଟକର ଗୋଟିଏ କଲେଜରେ ସେ ବିଜ୍ଞାନ ପଢ଼ନ୍ତି । ବିଜ୍ଞାନ ବିଷୟରେ ଲେଖାଲେଖି ବି କରନ୍ତି । ଟୁକୁନା ଅପେକ୍ଷା କରିଥାଏ ସେ ଆସିଲେ ତାଙ୍କୁ ପଚାରିବ ବୋଲି ।

( ୨ )

ସେଦିନ ମହାଷ୍ଟମୀ । ପୂଜା ଛୁଟି ଆରମ୍ଭ । ଭାଇ ଆସି ପହଞ୍ଚିବାର କଥା । ଟୁକୁନା ଓ ଟିମି ତାଙ୍କ ବାଟକୁ ଚାହିଁରହିଥାନ୍ତି । ଦିନ ଯାଇ

ସଞ୍ଜ ହେଲା । ଅଜା ନତ୍ୟକର୍ମ ସାର ଦାଣ୍ଡ ପିଣ୍ଡାରେ ଲଣ୍ଠନଟିଏ ଧର ପୁରାଣ ପଢି ବସିଲେ । ଏ ଦୁହେଁ ତାଙ୍କର ପାଖରେ ବସିଥାନ୍ତି । ତାହା ଦେଖି ଅଜା ପଗୃରଲେ—"କରେ, ଆଜ କ'ଣ ପୁରାଣ ଶୁଣିବାରେ ଷର ମନ ?"

ମନ କଥା ମନ ଭିତରେ ରଖି ଝୁନୁନା ଚେଡ଼େଇ ହୋଇ କହିଲା—"ତମେ ଏତେ ପରିଶ୍ରମ କରି ପଢ଼ିବ—ହେଲେ ଶୁଣିବାକୁ କେହି ନାହାଁ । ଏଣୁ ମନରେ ଦୟା ଆସିଲା । ପଡ଼ାପଢ଼ିତ ନାହିଁ ସେଇଥି ପାଇଁ ଆସି ବସିଗଲୁ ।"

ଅଜା କ'ଣ ଗୋଟାଏ ଜବାବ ଦେବାକୁ ଯାଉଥିଲେ । ହେଲେ ତାଙ୍କ ଆଗରୁ ଟିମି କହିପକାଇଲା—"ମିଛ କହିବା ଝୁନୁନା ଭାଇଙ୍କର ଗୋଟାଏ ଅଭ୍ୟାସ ହେଲାଣି । ଭାଇଙ୍କୁ ଅନେଇ ବସିଛୁ ବୋଲ ସତ ସତ କହିଦେଉନା !"

ଅଜା—"ଓ ସେକଥା କହୁନା··· ହେଲେ, ଗାଡ଼ି ଆସିବାକୁ ତ ଆଉର ବହୁତ ସମୟ ବାକ ଅଛି ।"

ତାଙ୍କ ପାଟିରୁ କଥା ଛଡ଼େଇ ନେଇ ଝୁନୁନା କହିଲା—"ସେଇ ସମୟ ତକ ପୁରାଣ ଶୁଣିନେବୁ—କାନ ପବିତ୍ର ହୋଇଯିବ ।"

ଅଜା ହସି ହସି ଉତ୍ତର ଦେଲେ—"ହଉ··· ଶୁଣ୍, ଆଜ ବି' ଭଲ ବିଷୟଟିଏ ଅଛି ।"

ଟିମି ତ ପୁରାଣ ଗପ ଶୁଣିବାକୁ ଉଙ୍କୁଣୀ । ତେଣୁ ସେ ଆଗ୍ରହରେ ପଗୃରଲା, "କ ବିଷୟମ··· ?"

ଅଜା—"ଶ୍ରୀକୃଷ୍ଣଙ୍କ ଭୂତକେଳ"

ଟିମି—"ଭୂତକେଳ···? ବାଃ···ବଢ଼ିଆ କଥା । ଝୁନୁନା ଭାଇ ଭୂତ କ' ସଇତାନ ଅଛି ବୋଲ ମୋଟେ ବିଶ୍ୱାସ କରୁ ନାହାନ୍ତି । ଏଥର ବୁଝିବେ ଯେ ।"

ଟୁକୁନା ହସି ଦେଇ କହିଲା—"କଣ ଖାଲି ପୁରାଣରୁ ପଢି ଦେଲେ ମୁଁ ବିଶ୍ୱାସ କରିଯିବି ? ତା ପାଇଁ ତ ପୁଣି ପ୍ରମାଣ ଦରକାର ।"

ପୁରାଣ କଥାକୁ ଅବିଶ୍ୱାସ କରିବା କଥା ଶୁଣି ଅଜା ଟିକେ ବିଗିଡ଼ି ଗଲେ । ଚଡ଼ା ଗଳାରେ ସେ କହିଲେ—"ପ୍ରମାଣ··· ? କ'ଣ ପ୍ରମାଣ ତୁ ଚାହୁଁଚୁ ? ଦେଖିଲୁ ତରେ ସେଦିନ ହରିଜନ ସାଇର ତିନିତିନିଟା ଲୋକଙ୍କୁ ସଇତାନ କେମିତି କୂଅ ଭିତରେ ମାରିଦେଲା ? ଦିନ ପନ୍ଦରଟା ହେଇନି ···"

ଟୁକୁନା—"ସେ କଥାରେ ମୋର ମୋଟେ ବିଶ୍ୱାସ ହେଉନି ।"
ଅଜା—"କ'ଣ ହେଲା··· ?"

ଟୁକୁନା ନରମ ଗଳାରେ ଅଜାଙ୍କୁ ବୁଝେଇଲା ଭଳି କହିଲା —ଅଜା, ମୋ' ଉପରେ ରାଗନି । ମୁଁ ତୁମକୁ ଚିଡ଼େଇବାକୁ ଏକଥା କହୁନି । ସତକୁ ସତ କୂଅ ଭିତରେ ସଇତାନ ଥିବା କଥାରେ ମୋର ମୋଟେ ବିଶ୍ୱାସ ଆସୁନି । ସେଇଥି ପାଇଁ ଭାଇଙ୍କୁ ଅପେକ୍ଷା କରିଛି ପଚାରିବାକୁ··· "

ଅଜା ଆହୁରି ବିଗିଡ଼ି ଗଲେ । ସେ ବିରକ୍ତିଆ କଣ୍ଠରେ କହିଲେ —"ତୁ ଭାବୁଚୁ ଦୁନିଆ ଭିତରେ ତୋ' ଭାଇ ଖାଲି ଏକୁଟିଆ ପଣ୍ଡିତ··· ?"

ଅଜାଙ୍କ ପାଟି ଶୁଣି ଟୁକୁନା ଟିକଏ ସମୟ ଚୁପ୍ ହୋଇଗଲା । ଏତିକି ବେଳେ ବାହାରେ ରିକ୍ସା ଘଣ୍ଟି ଶୁଭିଲା । ଭାଇ ଆସିଗଲେ । ଟୁକୁନା ଓ ଟିମି ତାଙ୍କ ପାଖକୁ ଦଉଡ଼ିଗଲେ ।

ରିକ୍ସାରୁ ଓହ୍ଲେଇ ଆସି ଭାଇ ଅଜାଙ୍କୁ ନମସ୍କାର କଲେ । ପିଣ୍ଡା ଉପରକୁ ଉଠି ତାଙ୍କ ପାଖକୁ ଲାଗି ବସିପଡ଼ିଲେ । ଟୁକୁନା ଭାଇଙ୍କ ବ୍ୟାଗ୍ ଓ ଟିମି ସେ ଆଣିଥିବା ରସଗୋଲା ହାଣ୍ଡିଟି ଧରି ଠିଆ ହୋଇଥାନ୍ତି । ତେଣୁ ଅଜା କହିଲେ—"ସେମିତି ଠିଆ ହୋଇଚ

କାହିଁକି ? ଭାଇଙ୍କୁ ପାଣି ଢ଼ାଳେ ଆଣି ଦିଅ । ସେ ଆଗେ ହାତ ଗୋଡ଼ ଧୋଉ··· ।"

ଟୁକୁନାକୁ ଏଥର ସୁଯୋଗଟାଏ ମିଳିଗଲା । ସେ ଅଜାଙ୍କ ମୁହଁକୁ ଚାହିଁ ଫିକ୍ କରି ହସିଦେଇ କହିଲା—"ପାଣି ଆଣିବି କେମିତି ? ସନ୍ଧ୍ୟା ହେଲାଣି ପରା··· । ହରିଜନ ସାଇର କୂଅ ପୋତା ହେଲା ପରେ ସେ ସଇତାନଟା ଆସି ଆମ କୂଅରେ ରହୁଥିବ ବୋଲି ମୁଁ ଭାବୁଛି ।"

ତା' କଥାରେ ଭାଇ ଓ ଟିମି ହସିଉଠିଲେ । ହସୁ ହସୁ ଭାଇ କହିଲେ—"ସତେମ ଅଜା, ଆମ ଗାଁରେ କୂଅ ଭିତରେ ପଶି ତିନି ତିନିଟା ଲୋକ ମରିଗଲେ—ଖବରକାଗଜରୁ ପଢ଼ି ମୋତେ ଭାରି ଦୁଃଖ ଲାଗିଲା ।"

ଅଜା ଗମ୍ଭୀର ହୋଇ ଉତ୍ତର ଦେଲେ—"ସମସ୍ତେ ବିଶ୍ୱାସ କରୁଚନ୍ତି ଯେ' କୂଅଟାରେ ସଇତାନ ଥିଲା । ମୁଁ ସେଇକଥା କହିଲାରୁ ଦେଖୁଚୁ ଟୁକୁନା ମତେ ତ କେମିତି ଥଟ୍ଟା କରୁଚି··· । ତୁ ଆସିବାର ଠିକ୍ ଆଗରୁ ମୋ' ସାଥିରେ ଘାତମତ ଯୁକ୍ତି ଚାଲିଥିଲା ।"

ଭାଇ ବିଗିଡ଼ିଲା ଭଳି ହୋଇ ଟୁକୁନାକୁ କହିଲେ—"ତୋ'ର ସେଇ ପୁରୁଣା ଅଭ୍ୟାସ ଗଲାନି ? ଅଜା ବୁଢ଼ା ମଣିଷ । ସବୁବେଳେ ଏମିତି ତାଙ୍କ ସାଥିରେ ଲାଗିବାଟା ଭଲ ନୁହେଁ ।"

ଟୁକୁନା ବ୍ୟାଗ୍‌ଟି ତଳେ ରଖି ବସି ପଡ଼ିଲା । ମୁହଁଟି ପୋତି ନରମ ଗଳାରେ କହିଲା—"କ'ଣ କରିବି ? ମୋର ଏକଥାରେ ମୋତେ ବିଶ୍ୱାସ ହେଉନି । ସତରେ କ'ଣ ସଇତାନ ବୋଲି ଗୋଟାଏ କିଛି ଥାଏ ? ପୁଣି, କୂଅ ଭିତରେ··· ?"

ଭାଇଙ୍କୁ ତ ହାଲିଆ ଲାଗୁଥାଏ । ସେ ଉତ୍ତର ଦେଲେ—"ସେ କଥା ପରେ ଆଗେ ତୁ ପାଣି ଢ଼ାଳେ ଆଣ ।"

ଟୁକୁନା ଓ ଟିମି ଘର ଭିତରକୁ ଗଲେ । କିଛି ସମୟ ପରେ ଟୁକୁନା ଢାଳେ ପାଣି ଓ ଟିମି ଥାଳରେ ଜଳଖିଆ ଧରି ଆସି ପହଞ୍ଚିଲା । ଭାଇ ମୁହଁ ହାତ ଧୋଇଦେଲେ । ମଝିରେ ରହିଲା ଜଳଖିଆ ଥାଳ । ସମସ୍ତେ ତା' ଚାରିପାଖେ ବେଢ଼ି ବସିଲେ ।

ଖିଆ ଚାଲିଥାଏ । ଅଜା ଓ ଭାଇଙ୍କର ଭଲ ମନ୍ଦ କଥାବାର୍ତ୍ତା ମଧ୍ୟ ଚାଲିଥାଏ । ଟୁକୁନା ଚୁପ୍ ରହି ଓଠ ଉଣ୍ଡୁଥାଏ ପୁଣି ଥରେ ସଇତାନ କଥା ଉଠେଇବାକୁ । ଟିମି କେବଣେ ଗୋଟାକୁ ଗୋଟା ମିଠା ଗିଳିବାରେ ବ୍ୟସ୍ତ ।

ଏତିକବେଳେ ଦାମ ସେନା ଓ ମଧୁ ମଳିକ ଆସି ପହଞ୍ଚିଗଲେ । ସେ ଦୁହେଁ ହରିଜନ ସାହିର ମୁଖିଆ । ସେମାନେ ଅଜାଙ୍କର ଘର ଆପଣାର । କିଛି କାମ ନଥିଲେ ଆସି ପହଞ୍ଚି ଯାଆନ୍ତି । ଭଲ ମନ୍ଦ ଦୁଃଖସୁଖ ହୁଅନ୍ତି । ପୁରାଣ ଶୁଣନ୍ତି ।

ଅଜା ସେ ଦୁହିଁଙ୍କୁ ବସିବା ପାଇଁ କହି ପଚାରିଲେ—"କ'ଣ ସବୁ ଭଲତ ?"

ଦାମ—"ଆଜ୍ଞା, ଆଉ ଭଲ କ'ଣ ? ପିଇବା ପାଣି ମୁନ୍ଦାଏ ପାଇଁ ଘାରି ହରକତ ହଉଚୁ ।"

ଭାଇ କହିଲେ—"ନୂଆ କୂଅଟିଏ ଖୋଳାଉନା କାହିଁକି ? ମୁଁ ତ ଛୁଟିରେ ଅଛି । ବ୍ଲକ ହାକିମଙ୍କୁ ଯାଇ କହିବ । ସେ ନିଶ୍ଚୟ କିଛି ଟଙ୍କାପଇସା ସାହାଯ୍ୟ କରିବେ ।"

ତାଙ୍କୁ ଅଧିକ କହିବାକୁ ନଦେଇ, ଅଜା ଚମକିପଡ଼ିଲା ପରି କହିଲେ—"ନା···ନା···ସେ କଥା ହବନି । ତାଙ୍କ ସାହିର କେହି —ଏଥିରେ ରାଜି ହେବେନି ବରଂ ପାଣି କଷ୍ଟ ସହିବେ ।"

ଭାଇ ହସିଲେ—"କାହିଁକି ? ପୁଣି ସଇତାନ ଆସି ସେଥିରେ ରହିଯିବ ବୋଲି ଭୟ କରୁଚନ୍ତି ନା' କଣ··· ?

ଅଜା ଟିକିଏ ଚୁପ୍ ମାରି ଗଲେ । ଟୁକୁନାକୁ ସୁଯୋଗ ମିଳିଗଲା । ସେ ଖେଁ···ଖେଁ···ହୋଇ ହସି ପକାଇ କହିଲା—ହଁ···ଭାଇ, ସେଇଆ । ଆମ ଗାଁର ଅନେକ ଲୋକ ସେଇକଥା କହୁଚନ୍ତି । ଆଉ, ପାଠ ନ ପଢ଼ିଥିବା ବିଚରା ହରିଜନମାନେ ସେଥିରେ ବିଶ୍ୱାସ ନ କରିବେ କିପରି ? ସେମାନେ ଗାଁ ମୁଣ୍ଡ ପୋଖରୀର ଅପରିଷ୍କାର ପାଣି ନେଇ ପିଉଚନ୍ତି । ସେଥିରେ ରୋଗ ହେବ ନାହିଁ ହେବ··· ।"

ଅଜା ବିରକ୍ତ ହୋଇ ଟୁକୁନା ଆଡ଼କୁ କଟମଟ୍ କରି ଚାହିଁଲେ । ସେ ଚୁପ୍ ହୋଇଗଲା । ଭାଇ ଏକଥା ଲକ୍ଷ୍ୟ କରିଥାନ୍ତି । ଅଜା ଗାଁର ଜଣେ ମୁଖିଆ ଲୋକ । ପୁଣି ହରିଜନ ସାଇବାଲା ତାଙ୍କୁ ଭାରି ମାନନ୍ତି । ସେଠାରେ କିଛି ଗୋଟାଏ କରିବାକୁ ହେଲେ ତାଙ୍କ ସମର୍ଥନ ଦରକାର । ତେଣୁ, ସେ ଠିକ୍ କଲେ ଆଗେ ଅଜାଙ୍କୁ ବୁଝେଇବାକୁ ହେବ । ତାଙ୍କ ସାଙ୍ଗେ ସାଙ୍ଗେ ହରିଜନ ସାଇର ମୁଖିଆ ଦୁହେଁ ବି ବୁଝିଯିବେ । ନହେଲେ ସେଠାରେ ନୂଆ କୂଅ ଖୋଳାଯାଇ ପାରିବ ନାହିଁ । ତେଣୁ ସେ ତାଙ୍କୁ ବୁଝେଇବା ପାଇଁ ଧୀର କଣ୍ଠରେ କହିଲେ—"ଜାଣିଚ ଅଜା, ଡ଼ାକ୍ତର କ'ଣ ରିପୋର୍ଟ ଦେଇଚି ? ହରିଜନ ସାଇର ସେ ତିନିଜଣ ପିଲା କୂଅ ଭିତରେ ଅଣନିଶ୍ୱାସୀ ହୋଇ ମରିଚନ୍ତି··· ।"

ଅଜା—"ମୁଁ କ'ଣ ମନା କରୁଚି ? ହେଲେ, କୂଅ ଭିତରେ ତ ଅଣ୍ଟାଏ ହେବ ପାଣି ଥିଲା । ସଇତାନ ତାଙ୍କ ତଣ୍ଟି ଚିପି ଧରି ନଥିଲେ ସେମାନେ ଅଣ ନିଶ୍ୱାସୀ ହୋଇ ମରିଥାନ୍ତେ କପରି ?"

ଭାଇ ହସି କହିଲେ—"ଏକଥା ଆଜକାଲି କ'ଣ କେହି ବିଶ୍ୱାସ କରୁଚନ୍ତି ?"

ଅଜା ଚଡ଼ା ଗଳାରେ କହିଲେ—"କଣ କହିଲୁ··· ?

ଭାଇ ଆଉ କିଛି କହିବା ଆଗରୁ ଝିମି ଚମକି ଉଠିଲା ପରି ପଚାରିଲା—"ସତରେ କ'ଣ ସଇତାନ ନାହାନ୍ତି ଭାଇ ··· ?"

ଟୁକୁନା ତାକୁ ଧମକଟାଏ ଦେଇ କହିଲା—"ଏବେ ପୁଣି ପଚାରୁଛୁ କାହିଁକି ? ହରିଜନ ସାଇ କୂଅରେ ସଇତାନ ଥିଲା ବୋଲି ତୁ ତ' ଆଗେ ପ୍ରଚାର କରିଛୁ ।"

ଝିମି ଉତ୍ତର ଦେଲା—"ମୁଁ ଯାହା ଶୁଣିଲି କହିଲି ସେଥିରେ ମୋର ଦୋଷ କ'ଣ ?"

ଭାଇ—"ନା ··· ସେଥିରେ ତୋର କାହିଁକି ଦୋଷ ହେବ ? ଆମ ଦେଶରେ ଅନେକ ଲୋକ ତ' ସେଇଆ ବିଶ୍ୱାସ କରନ୍ତି ।"

ଅଜା ତା' ପାଟିରୁ କଥା ଛଡ଼େଇ ନେଇ କହିଲେ—"ସେମାନଙ୍କ ବିଶ୍ୱାସ ଯଦି ଭୁଲ୍ ବୋଲି ଭାବୁଚୁ, ଠିକ୍ କ'ଣ କହିଲୁ ଦେଖି ?"

ଭାଇ ହସିଲେ । ଠୁକୁନା ତ' ସେଇଆ ଶୁଣୁଥିଲା । ସେ ଚଟାପଟ୍ କହିପକାଇଲା—"ସତରେ ଭାଇ, ହରିଜନ ସାହିର ଲୋକ ତିନିଜଣ କୂଅ ଭିତରେ ମଲେ କିପରି ? ତାର କାରଣ ମୁଁ ତ' ବୁଝିପାରୁନି । କୂଅ ଭିତରେ ତ' ଅନେକ ଲୋକ ପଶନ୍ତି ।"




[ କୂଅ ଭିତରେ ଗ୍ୟାସ ]

ଭାଇ ରାମ ଓ ମଧୁକୁ ପଚାରିଲେ—"ଆଚ୍ଛା, କେତେଦିନ ହେଲା ସେ କୂଅଟା ଉଖେଳା ହୋଇ ନଥିଲା ?"

ମଧୁ "ବେଶ୍ ପାଣି ତ ପଡୁଥିଲା—ଏଣୁ ଆମେ ତାକୁ ଉଖାଳୁ ନଥିଲୁ ।"

ଭାଇ ଗମ୍ଭୀର ହୋଇ କହିଲେ—"ଏବେ ଶୁଣିଲ ତ' . . . ? କୂଅ ମୂଳରେ ଆମ୍ବଗଛ । ସେଥିରୁ ଡାଳ ପତ୍ର କୂଅରେ ପଡ଼ି ପଚୁଥିଲା ।

ତେଣେ ତାକୁ ଉଦ୍ଖଳା ଯାଉନଥିଲା । ସେଥିରୁ ଅଙ୍ଗାରକାମ୍ଳ, ମିଥେନ୍ ଆଦ ବଷାକ୍ତ ବାଷ୍ପ ନିଶ୍ଚୟ ବାହାରୁଥିବ । ଏସବୁ ବାଷ୍ପ ପବନ ଠାରୁ ଅଧିକ ଓଜନ । ତେଣୁ, ତାହା ବାହାରକୁ ବାହାରିନପାରି କୂଅ ଭିତରେ ଜମିରହୁଥିଲା । ପାଣିରେ ବୁଡ଼ଗଲା ଭଳି ଏ ବାଷ୍ପ ଭିତରେ ମଧ୍ୟ ଆମେ ଅଣନିଶ୍ୱାସୀ ହୋଇପଡ଼ୁ । ସେଇଥି ପାଇଁ ବୋଧହୁଏ ସେ ତିନିଜଣ ଯାକ କୂଅ ଭିତରେ ପଶି ଅଣନିଶ୍ୱାସୀ ହୋଇମଲେ ।''

ଭାଇଙ୍କ ପାଟିରୁ କଥା ନସରୁଣୁ ହାମ କହିଲା—''ହଁ ଆଜ୍ଞା, ସେଇଆ ହୋଇଥିବ । ଯଦି ସଇତାନ ଥିଲା ତେବେ ନଆଁ ନିଭାଳୀ ଲୋକ ସେଥିରେ ପଶି ଶବ କାଢ଼ିଲେ କମିତି ?''

ଭାଇ—''ତମେ ସେଇ କଥା ବୁଝିବା ଉଚିତ୍ । ଅନ୍ୟମାନଙ୍କୁ ବି' ବୁଝେଇ ଦିଅ । ଜଲ୍‌ଦି ନୂଆ କୂଅଟିଏ ଖୋଳିବା । ଏଥିରେ ଯେମିତି ତମ ସାହିର ସମସ୍ତେ ସହଯୋଗ କରି··· । ନହେଲେ ମଇଳା ପାଣି ପିଇ ରୋଗ ଭୋଗୁଥିବ ।''

ହାମ—''ହିଁ···କଥାଟା ବୁଝିଗଲୁ । ଏଥିରେ ତ' ଆମରି ଉପକାର ହେବ—ସହଯୋଗ ନକରିବୁ କାହିଁକି ? ଆଜି ଆମେ ସାଇର ସମସ୍ତଙ୍କୁ ଡ଼ାକି ବୁଝେଇଦେଉଚୁ ।''

ଏତେ ଦିନେ କାରଣଟା ଜାଣିପାରିଥିବାରୁ ଟୁକୁନା ଭାରି ଖୁସି ହୋଇଗଲା । ଟିମି ନିଜ ବୋକାମୀ ପାଇଁ ମନେ ମନେ ହସୁଥାଏ । ଅଜା ଚୂପ୍ ହୋଇ ବସିଥାନ୍ତି । ତେଣୁ, ଟୁକୁନା ତାଙ୍କ ପାଖକୁ ଘୁଞ୍ଚିଯାଇ ମୁରୁକି ହସା ଦେଇ କହିଲା—''ଏଥର ବୁଝିଲ ତ' ଅଜା··· ସେ ଲୋକ ତିନିଜଣଙ୍କୁ କେଉଁ ସଇତାନ ମାରିଦେଇଥିଲା···? ଆଗରୁ ଦଉଡ଼ି ଲଗେଇ ମରିଥିବା ଲୋକର ଆତ୍ମା ନୁହେଁ—ପଚିସଡ଼ା ଜିନିଷରୁ ବାହାରୁଥିବା ବଷାକ୍ତ ବାଷ୍ପ ।''

ଅଜା ହସି ଦେଇ ଉତ୍ତର ଦେଲେ—''ହଅଁ ମ, ସେଇ ଏକା କଥା । ଆତ୍ମାର ଯେମିତି ରୂପ ନାହିଁ, ଏ ବାଷ୍ପର ସେମିତି ରୂପ ନାହିଁ । ମୁଁ ଭାବୁଥିଲି ମଲା ମଣିଷର ଅମୋକ୍ଷ ଆତ୍ମା ସଇତାନ ହୋଇ କୂଅରେ

ଥିଲା । ଭାଇ କହୁଛ ଅଳିଆ ଆବର୍ଜନା ପଡ଼ିଥିବାରୁ ବିଷାକ୍ତ ବାଷ୍ପ ବାହାରି ସେଥିରେ ଥିଲା । ଆତ୍ମା ତ ସବୁଥିରେ ଥାଏ । ସେ ବାଷ୍ପକୁ ଅଳିଆ ଆବର୍ଜନାର ଆତ୍ମା ବୋଲି ଧରିନେଲେ ହେଲା . . . ”

ଅଜାଙ୍କ କଥାରୁ ଜଣାପଡୁଥାଏ ଯେ’ ଭାଇଙ୍କ କଥାରେ ତାଙ୍କର ବିଶ୍ୱାସ ହୋଇଛନ୍ତି । କେବଳ ହାର୍ ମାନିବାକୁ ସେ ରାଜି ନୁହନ୍ତି । ସେଇଥି ପାଇଁ ସେ କଥାକୁ ଏଣୁତେଣୁ ଗୋଳଉଛନ୍ତି । ତେଣୁ ଟୁକୁନା ଚେହେଲିଆ କଣ୍ଠରେ ତାଙ୍କୁ କହିଲା—“ଆତ୍ମା ପରି ବଡ଼ ବଡ଼ କଥାକୁ ବୁଝି ନଉଛ—କିନ୍ତୁ ହରିଜନ ସାଇରେ ନୂଆ କୂଅଟିଏ ଖୋଳା ହେବା ଉଚିତ ବୋଲି ତ ଏଇ ସରଳ କଥାଟା ବୁଝିପାରୁନା କିମିତି ?”

ଅଜା ହସି ଦେଇ ତତ୍‌କ୍ଷଣାତ୍ ଉତ୍ତର ଦେଲେ—“ବୁଝୁନି ବୋଲି ତତେ କହିଲା କିଏ ?”

ତାଙ୍କ କଥାରେ ସମସ୍ତେ ହସି ଉଠିଲେ । ହସୁ ହସୁ ଭାଇ କହିଲେ—“ଠିକ୍ କଥାଟା ତୁମେ ଏବେ ବୁଝିଲ । ଦାମ ଓ ମଧୁ ବି’ ବୁଝିଲେଣି । ଏଥର ହରିଜନ ସାଇର ଲୋକଙ୍କୁ ଏକଥା ବୁଝେଇ ଦିଅ । ନୂଆ କୂଅଟିଏ ଖୋଳିବାକୁ ସେମାନେ ଲାଗିପଡ଼ନ୍ତୁ । ପୂଜା ଛୁଟି ଭିତରେ ଏ କାମ ଶେଷକରିବାକୁ ମୁଁ ମନେ ମନେ ଠିକ୍‌କରିଛି ।”

ଟୁକୁନା କହିଲା—“ହଁ ଅଜା, ସେଇଆ କର । କୂଅଟାକୁ ପରିଷ୍କାର ରଖିଲେ ସଇତାନ ଆଉ ସେଥିରେ ବସା ବାନ୍ଧି ପାରିବ ନାହିଁ କି କାହାରି ତଣ୍ଟି ଚିପି ମାରି ପାରିବ ନାହିଁ । କିନ୍ତୁ କୂଅ ନଖୋଳି ମଇଳା ପାଣି ପିଇଲେ ରୋଗ ସଇତାନ ନିଶ୍ଚେ ସମସ୍ତଙ୍କ ତଣ୍ଟି ଚିପିବ ।”



# ଇଂନ୍ଦ୍ର ରଜାଙ୍କ ସହର ନିଶା

ହଠାତ୍ କଳାହାଣ୍ଡିଆ ମେଘ ଉଠାଇଆସି ଢ଼ାଳଦେଲା ଅସରାଏ ବର୍ଷା । ଟୁକୁନାର ମନଟା ଗୋଳେଇ ଘାଣ୍ଟି ହେଲା । ତା ଜେଜେ ଆସି ପହଞ୍ଚିବା କଥା । ବସ୍ ଆସି ଯିବଣି । ଛତାଟିଏ ଧରି ଯାଇଥିଲେ ଭଲ ହୋଇଥାଆନ୍ତା । କିନ୍ତୁ ଏବେ ଯାଇ ଆଉ ଲାଭ ନାହିଁ—କାରଣ ସେ ଷ୍ଟାଣ୍ଡ୍‌ରୁ ବାହାରି ଆସିସାରଥିବେ ।

ଏତିକବେଳେ ଦାଣ୍ଡରେ ରିକ୍ସା ଘଣ୍ଟି ଶୁଭିଲା । ଟୁକୁନା ଦେଖିଲା ଜେଜେ ରିକ୍ସାରୁ ଓହ୍ଲାଇ ଆସୁଚନ୍ତି । ଲୁଗାପଟା ସବୁ ତାଙ୍କର ପାଣିରେ ଜୁଡୁବୁଡୁ ।

ଜଲ୍‌ଦି ପିଣ୍ଡା ଉପରକୁ ଉଠି ଆସୁ ଆସୁ ଜେଜେ କହିଲେ—"ଦେଖିଲୁ ଟୁକୁନା, କମିତି ଇନ୍ଦ୍ର ରାଜାଙ୍କୁ ସାଥିରେ ଧରି ଚାଲି ଆସିଲି ?" ଟୁକୁନା ଜୁହାର ହେଉ ହେଉ ଜବାବ ଦେଲା—"ନାଇମ ଜେଜେ, ଗଲା କେତେ ଦିନ ହେଲା ଇନ୍ଦ୍ରରାଜା ପ୍ରାୟ ସବୁଦିନେ ଇଆଡ଼େ ଆସୁଚନ୍ତି··· ।"

ଜେଜେ—"ଏଁ···ସବୁଦିନେ ? ଅଥଚ ତେଣେ ଗାଁରେ ମୋଟେ ବର୍ଷା ନାହିଁ । ବଲଦକୁ ଲଙ୍ଗଳ ଯାଇପାରୁନ ।"

ଟୁକୁନା—"ହଅଁମ···  ଆଜି କାଲି ମଫସଲ ଯିବାକୁ କିଏ ଇଚ୍ଛା କରୁଚି ଯେ···  ମହାମଉଜିଆ ଇନ୍ଦ୍ରରାଜା ବା' ସେଥିରୁ ବାଦ୍ ଯାଆନ୍ତେ କାହିଁକି ?"

ପାଟି ଶୁଣି ଟୁକୁନାର ବଡ଼ଭାଇ ମଧୁ ଓ ସାନ ଭଉଣୀ କୁନି ଘରୁ ବାହାରିଆସିଲେ । ସେମାନେ ଜେଜେଙ୍କୁ ଜୁହାର ହେଲେ । ଜେଜେ

ମଧୁକୁ ଗୃହିଁ ହସି ହସି କହିଲେ—"ଶୁଣିଲୁତ' ଟୁକୁନା କ'ଣ କହୁଚ ? ଇନ୍ଦ୍ରରାଜା କୁଆଡ଼େ ସହସ୍ର ପାଳଟି ଗଲେଣି ଯେ' ମଫସଲ ଯିବାକୁ ଇଚ୍ଛା କରୁ ନାହାନ୍ତି ।"



[ ଜେଜେ ବର୍ଷାରେ ଓଦା ହେଲେ ]

ମଧୁ ମୁରୁକି ମୁରୁକି ହସି ଉତ୍ତର ଦେଲା—"ସିଏ କ'ଣ କହିବ ? ବୈଜ୍ଞାନିକମାନେ ତ' ସେଇଆ କହୁଚନ୍ତି . . . ।"

ବିଜ୍ଞାନ ନାଁ ଶୁଣିଲେ ଜେଜେଙ୍କ ନାହିଁ ଡ଼ର । କାରଣ, ସେ ଭାବନ୍ତି ଏ ପାଠ ପଢ଼ିବାଦ୍ୱାରା ପିଲାମାନଙ୍କର ଧର୍ମ ପ୍ରତି ବିଶ୍ୱାସ ରହୁନ । ତେଣୁ, ସେ ଟିକିଏ ବିରକ୍ତ ହୋଇ ଭଳି କହିଲେ—"କି ବିଜ୍ଞାନ ପଢ଼ିଲୁ ଯେ, ସବୁବେଳେ ଖାଲି ସେଇକଥା । ହଉ, କହିଲୁ ଦେଖି— ବୈଜ୍ଞାନିକମାନେ କ'ଣ କରୁଚନ୍ତି ?"

ଘୁ'ା ଭିତରେ ବୋଉ ଆସି ଜେଜଙ୍କୁ ଶୁଖିଲା ଲୁଗା ଦେଇ ସାରିଥାନ୍ତି । ସେ ଲୁଗା ବଦଳୁ ବଦଳୁ ପୁଣି କହିଲେ—"ଆରେ ବାବା, ପୃଥିବୀରେ ଧର୍ମକର୍ମ ତ' ହାନି ହେଲା । ସେଇଥି ପାଇଁ କେଉଁଠି ଅତି ବୃଷ୍ଟି ହେଲେ ଅନ୍ୟ କେଉଁଠି ଅନାବୃଷ୍ଟି ହେଉଛି ।"

ମଧୁ ହସି ହସି କହିଲା—"ହଉ ହେଲା··· ସେ କଥା ପରେ । ଆଗ ଘର ଭିତରକୁ ଆସ । ଚା' କପେ ହେଉ··· "

ଜେଜେ ଦାଣ୍ଡଘରେ ବସିଲେ । ତାଙ୍କୁ ଘେରି ବସିଲେ ପିଲାମାନେ ।

ବୋଉ ଚା' ଓ ଜଳଖିଆ ରଖିଦେଇଗଲେ । ଜେଜେ ଚା' କପ୍‌ଟି ଉଠାଇନେଲେ । ପିଲାମାନେ ଜଳଖିଆ ଆରମ୍ଭ କରିଦେଲେ । ପକୁଡ଼ିଟାଏ ପାଟିକୁ ପକାଉ ପକାଉ ଟୁକୁନା ଜେଜେଙ୍କୁ କହିଲା—"ଆଜି ଗପ କ'ଣ କହିବେ ?"

ଜେଜେ ମଧୁକୁ କହିଲେ—ହଁ···କ'ଣ କହିବୁ ଗପ ? କହୁନୁ··· "

ମଧୁ—"ତମେ ବିରକ୍ତ ହେବନି ତ' ?"

ଜେଜେ ହସି ଦେଲେ—"ବିରକ୍ତ ହେବି କାହିଁକି ? ତୁ ଦେବତାମାନଙ୍କ ବିରୁଦ୍ଧରେ ନ କହିଲେ ହେଲା ।"

ମଧୁ—"ନାଇଁମ, ମୁଁ ଦେବତାଙ୍କ ବିରୁଦ୍ଧରେ କହିବି କାହିଁକି ? ଆଜି କାଲି ପ୍ରକୃତରେ ସହରମାନଙ୍କରେ ଅଧିକ ବର୍ଷା ହେଉଛି । ମୁଁ ସେଇ ବିଷୟରେ କହିବି ।"

ସହରରେ ଯେ' ମଫସଲଠାରୁ ପ୍ରକୃତରେ ଅଧିକ ବର୍ଷା ହେଉଛି, ଏ ବିଷୟରେ ଜେଜେ କି' ପିଲାମାନେ କେହି ସଚେତନ ନ ଥିଲେ । ତେଣୁ ଜେଜେ ପଚାରିଲେ—"ସତରେ କ'ଣ ମଫସଲ ଠାରୁ ସହରରେ ବେଶି ବର୍ଷା ହୁଏ ?"

ମଧୁ—"ହଁ··· ଆଜି କାଲି ହେଉଛି । କିନ୍ତୁ ଆଗେ ଏହା ଠିକ୍ ଓଲଟା ଥିଲା । କାରଣ ସେତେବେଳେ ଗାଁଗଣ୍ଡାରେ ବହୁ ସଂଖ୍ୟକ

ଗଛଲତା ଥିଲା । ଏବେ ସେସବୁଗୁଡ଼ିକ ଧ୍ୱଂସ ପାଇବାକୁ ବସିଲାଣି । ସବୁଜ ଗଛଲତା ବର୍ଷା ହେବାରେ ସାହାଯ୍ୟ କରନ୍ତି । ସେଥିପାଇଁ ମଫସଲରେ ବର୍ଷା ହେବା କମିଯାଉଛି ।''

ଜେଜେ—''ଏକଥା ଯାହା କହିଲୁ ସତ । ମୋ ପିଲାଦିନେ ଗାଁ ଗଣ୍ଡାରେ ଯେତେ ଗଛବୃଛ ଥିଲା, ଆଜି ତା'ର ଚାରି ଭାଗରୁ ଭାଗେ ବି' ନାହିଁ । ଗାଁକୁ ଗାଁ ଭରି ରହିଥିଲା ତୋଟା ବଗିଚା । ସମସ୍ତେ ଘର ଚାରି ପାଖରେ ପାଞ୍ଚ ଦଶଟା ଗଛ ଲଗାଉଥିଲେ । ସ୍ଥାନେ ସ୍ଥାନେ ଛୋଟ ବଡ଼ ଜଙ୍ଗଲ ବି' ଥିଲା । ସେ ସବୁ ଏବେ ଆଉ ନାହିଁ ।''

ଜେଜେଙ୍କ ପାଟିରୁ କଥା ଛଡ଼େଇ ନେଇ ଟୁକୁନା କହିଲା—''ଗଛ ଲତା ନ ଥିବାରୁ ସିନା ଗାଁଗଣ୍ଡାରେ ବର୍ଷା କମିଗଲା, ହେଲେ ସହରରେ ତାହା ବଢ଼ିଲା କାହିଁକି ? ସହରରେ କ'ଣ ଗଛ ଲତା ସଂଖ୍ୟା ବେଶି ହେଇଗଲା ?''

ମଧୁ—''ମୁଁ ତ' ସେଇ କଥା ବୁଝାଇବାକୁ ଯାଉଛି । କିନ୍ତୁ, ତା' ଆଗରୁ ବର୍ଷା କିପରି ହୁଏ ସେ ବିଷୟରେ କିଛି ଜାଣିବା ଦରକାର । ତମେ ଜାଣିଛ ଯେ' ସୂର୍ଯ୍ୟଙ୍କ କିରଣ ନଦୀ, ହ୍ରଦ, ସମୁଦ୍ର ଇତ୍ୟାଦିରୁ ପାଣିକୁ ବାଷ୍ପରେ ପରିଣତ କରିଦିଏ । ଏ ବାଷ୍ପ ପବନ ସାଥିରେ ମିଶି ଉପରକୁ ଉଠେ । ସେଠାରେ ତାହା ଥଣ୍ଡା ପାଇ ମେଘ ସୃଷ୍ଟି କରେ । ମେଘ ଆକାଶରେ ଭାସି ବୁଲୁଥିଲା ବେଳେ ସେଥିରେ ଥିବା ଜଳୀୟବାଷ୍ପ ଥଣ୍ଡା ହୋଇ ବାୟୁରେ ଥିବା ଧୂଳିକଣା ଚାରିପାଖରେ ଲାଗି ଛୋଟ ଛୋଟ ଜଳକଣା ସୃଷ୍ଟି କରେ । କ୍ରମେ ଜଳକଣା ଗୁଡ଼ିକ ଏକାଠି ମିଶି ବଡ଼ ବଡ଼ ଜଳ ବିନ୍ଦୁରେ ପରିଣତ ହୁଅନ୍ତି ଏବଂ ବର୍ଷା ଆକାରରେ ପଡ଼ନ୍ତି । ଗଛ-ଲତା ଓ ବଣ ଜଙ୍ଗଲ ପରିବେଶକୁ ଥଣ୍ଡା ରଖନ୍ତି । ଏଣୁ ତାହା ଯଥେଷ୍ଟ ବର୍ଷା ହେବାରେ ସହାୟକ ହୁଅନ୍ତି । ବେଳେ ବେଳେ ମେଘ ଦେହରେ ଛୋଟ ଛୋଟ ବରଫ କଣିକା ସୃଷ୍ଟି ହେବା ଦ୍ୱାରା କିମ୍ବା ମେଘ ପାହାଡ଼ ଦେହରେ ଧକ୍କା ପାଇବା ଦ୍ୱାରା ମଧ୍ୟ ଏହା ହୋଇଥାଏ । ହେଲେ, ଅଧିକାଂଶ ସମୟରେ ବାୟୁମଣ୍ଡଳରେ ଧୂଳିକଣା ହିଁ ବର୍ଷା ହେବାରେ ସାହାଯ୍ୟ କରନ୍ତି ।''




[ କେମିତି ବର୍ଷା ହୁଏ ]

ମଧୁର କଥା ଶେଷ ନହେଉଣୁ ଜେଜେ କହିପକାଇଲେ—"ତା'ହେଲେ ସହରରେ ତ' କମ୍ ବର୍ଷା ହେବା କଥା ? ଗାଁଗଣ୍ଡାରେ ସିନା ବେଶି ଧୂଳି ମାଟି— ସହରରେ କିନ୍ତୁ ପକ୍କା ଘର··· ପକ୍କା ରାସ୍ତା ···"

ମଧୁ ହସି ହସି ଉତ୍ତର ଦେଲା—"ନା ଜେଜେ, ଆମର ଏ ଧାରଣା ଭୁଲ । ପ୍ରକୃତରେ ସହରର ବାୟୁ ମଣ୍ଡଳରେ ଧୂଳିକଣା ଅଧିକ । କାରଣ, ଏଠାରେ ରହିଛି ଅଧିକ କଳକାରଖାନା ଓ ଯାନବାହନ । ଦିନକୁ ଦିନ ଏଗୁଡ଼ିକର ସଂଖ୍ୟା ମଧ୍ୟ ବଢି ଚାଲିଛି । ସେଥିରୁ ବାହାରୁଥିବା ଧୂଆଁ ଧୂଳି ସବୁ ପବନରେ ମିଶୁଛି । ଜଳୀୟ ବାଷ୍ପ ଘନୀଭୂତ ହେବା ପାଇଁ ତାହା ସାହାଯ୍ୟ କରୁଛି । ସେଇଥି ଲାଗି ସହରରେ ବର୍ଷା ଅଧିକ ।

ଏହାର ଆଉରି ମଧ୍ୟ ଗୋଟାଏ କାରଣ ଅଛି । ସହରରେ ସାଧାରଣତଃ ଅଧିକ ଗରମ ହୁଏ । ଆଖପାଖ ଗାଁଗଣ୍ଡା ଠାରୁ ଏଠାର

ଉତ୍ତାପ ପ୍ରାୟ ୩ ରୁ ୪ ଡ଼ିଗ୍ରୀ ଅଧିକ । ଏଠାରେ ବାୟୁର ବେଗ ମଧ୍ୟ କମ୍ । ଫଳରେ ସହର ଉପରେ ସହଜରେ ମେଘ ସୃଷ୍ଟି ହୋଇପାରେ । ପୁଣି ସ୍ଥାନଟି ଅଧିକ ଗରମ ହୋଇଥିବାରୁ ସେଠାକୁ ଚାରିଆଡ଼ୁ ଥଣ୍ଡା ପବନ ବହେ । ଏଣୁ ମେଘରେ ଥିବା ଜଳୀୟ ବାଷ୍ପ ଥଣ୍ଡା ହେବା ପାଇଁ ସୁଯୋଗ ପାଏ ଏବଂ ବର୍ଷା କରାଏ ।"

ସମସ୍ତେ ଏକ ଲୟରେ ମଧୁର କଥା ଶୁଣିଯାଉଥିଲେ । ମଧୁର କଥା ସରିବାରୁ ସେମାନେ ଏବେ ପରସ୍ପରର ମୁହଁକୁ ଚାହିଁଲେ । ଅନ୍ୟ କେହି କିଛି କହିବା ଆଗରୁ ଟୁକୁନା ଜେଜେଙ୍କୁ ଥଟ୍ଟା କରି ବସିଲା— "ବୁଝିଲ ଜେଜେ, ଏଣିକ ଆଉ ଏଠାକୁ ଆସିଲେ ଗାଁକୁ ଫେରିବାକୁ ତରତର ହେବ ନାହିଁ । ଇନ୍ଦ୍ରରାଜାଙ୍କୁ ଯଦି ସହର କଣା ଏମିତି ଭାରୁଚି ତେବେ, ତାଙ୍କ ପ୍ରଜା ଅନ୍ୟ ଦେବତାମାନେ ମଧ୍ୟ ସେଥିରୁ ବାଦ ଯାଉ ନଥିବେ । ଏଣୁ ଗାଁ ଅପେକ୍ଷା ଏଇଠି ବସି ଡ଼ାକଲେ ତୁମ ଡ଼ାକରା ଦେବତାମାନଙ୍କ କାନରେ ସହଜରେ ବାଜିବ··· ।"

ଟୁକୁନାର କଥାରେ ସମସ୍ତେ ହସିଉଠିଲେ । ଏତିକିବେଳେ ବାପା ଅଫିସରୁ ଆସି ପହଞ୍ଚଗଲେ । ସେ ବି' ବର୍ଷାରେ ଗୋଟାପଣେ ଓଦା ହୋଇଥାନ୍ତି । ଟୁକୁନା ଉଠିଯାଇ ତାଙ୍କ ହାତରୁ ବ୍ୟାଗ୍ ଓ ଛତାଟା ନେଇଗଲା । ଲୁନ ଘର ଭିତରକୁ ଗଲା ଶୁଖିଲା ଲୁଗା ପାଇଁ ।



# କାହାପାଇଁ କେଉଁ ଗୀତ

ସନ୍ଧ୍ୟାବେଳ । ବୁନୁ ରେଡ଼ିଓ ଖୋଲି ସିନେମା ଗୀତ ଶୁଣୁଥାଏ । ଏତିକବେଳେ ଜେଜେ ଆସି ପହଞ୍ଚିଗଲେ । ସିନେମାଗୀତ ଶୁଣିଲାମାତ୍ରେ ସେ ଚଳନ୍ତ । ଘର ଭିତରକୁ ନ ପଶୁଣୁ ସେ ପାଟିକଲେ—"ବନ୍ଦ କର··· ବନ୍ଦ କର ସେ ଗୀତ । ଓହୋ, ଏ ଗୀତ ନା' ହୋହଲ୍ଲ ? ମଣିଷର ମୁଣ୍ଡ କ'ଣ ହୋଇଯାଉଛି··· ।"



[ ପିଲାମାନେ ଗୀତ ଶୁଣୁଚନ୍ତି ]

ବୁନୁ ଚଟାପଟ୍ ରେଡ଼ିଓ ବନ୍ଦ କରିଦେଲା । ଜେଜେଙ୍କୁ ଶାନ୍ତ

କରିବା ପାଇଁ ହସିଦେଇ କହିଲା—"ଏତେ ସୁନ୍ଦର ଗୀତ ଗୁଡ଼ାକ... ସମସ୍ତଙ୍କୁ ଭଲଲାଗୁଛି—ହେଲେ ତମେ ଶୁଣିଲା ମାନେ ଚିଡ଼ୁଚ।"

ଜେଜେ—"ସମସ୍ତେ କହିଲେ ଆଉ କଏ ? କେବଳ ତତେ ଓ ତୋ' ଭାଇକୁ ଛାଡ଼ି ଦେଲେ. ଆମଘର ଆଉ କଏ ଗୀତ ଶୁଣେ କହିଲୁ ?"

ଏତିକିବେଳେ ଘର ଭିତରକୁ ପଶି ଆସିଲା ବୁନୁର ବଡ଼ଭାଇ ଟୁକୁ। ସେ ଜଣେ ବିଜ୍ଞାନ ଛାତ୍ର। ଭଲ ପଢ଼େ। ତାକୁ ବିଜ୍ଞାନ ବିଷୟରେ ଅନେକ କଥା ଜଣା। ଏବେ ଖରା ଛୁଟିରେ ଘରକୁ ଆସିଚି।

ଜେଜେଙ୍କ କଥା ଟୁକୁ ଶୁଣିନେଇଥାଏ। ଏଣୁ ତାଙ୍କ ପାଖକୁ ଆସି ବସୁ ବସୁ ସେ କହିଲା—"ଜେଜେ, ଗୀତର ପସନ୍ଦ ତ' ବୟସ ଉପରେ ନିର୍ଭର କରେ। ଆମେ ବୟସରେ ସାନ। ତେଣୁ, ଆମକୁ ଗୋଟିଏ ପ୍ରକାର ଗୀତ ଭଲ ଲାଗୁଛି। ଘରେ ଅନ୍ୟମାନେ ସମସ୍ତେ ବୟସ୍କ। ସେଥିପାଇଁ ସେମାନଙ୍କର ଅନ୍ୟ ଗୀତରେ ପସନ୍ଦ।"

ଜେଜେ—ନା...ବୟସ ନୁହେଁ, ମନକୁ ନେଇ ପସନ୍ଦ। ଧ୍ରୁବ, ପ୍ରହ୍ଲାଦ ତ' ପୁଣି ପିଲା ବୟସରେ ଭଜନ ଜଣାଣରେ ଭୋଳ ହୋଇଯାଉଥିଲେ ?"

ଟୁକୁ—ଧ୍ରୁବ, ପ୍ରହ୍ଲାଦଙ୍କ କଥା ଛାଡ଼। ସେମାନେ ତ' ଅନ୍ୟ ମାନଙ୍କ ଠାରୁ ଅଲଗା। କିନ୍ତୁ, ସାଧାରଣ ମଣିଷର ମନ ତ' ବୟସ ଉପରେ ନିର୍ଭର କରେ। ତେଣୁ, ବୟସକୁ ନେଇ ଗୀତ ପ୍ରତି ପସନ୍ଦ ହୁଏ ବୋଲି କହିଲେ ଭୁଲ ହେବନାହିଁ।

ମୁହଁରେ ନମାନ ମଧ୍ୟ ନାତିଟା ଠିକ୍ କହୁଚି ଜାଣି ଜେଜେ ଟିକିଏ ଚୁପ୍ ହୋଇଗଲେ। ଏହି ଅବସରରେ ବୁନୁ ଭାଇକୁ ପଚାରିଲା—"ବୟସ ସହ ମନର ସମ୍ପର୍କ ତ' ନିଶ୍ଚୟ ଅଛି। ସେହିପରି ବୟସ ନେଇ ମଧ୍ୟ ଲୋକଙ୍କର ବିଭିନ୍ନ ଗୀତ ପ୍ରତି ପସନ୍ଦ ହୁଏ। ଏସବୁ ମୂଳରେ ତ' କିଛି ବୈଜ୍ଞାନିକ କାରଣ ନିଶ୍ଚୟ ଥିବ ?"

ଟୁଲୁ କହିଲା—"ହଁ ଅଛି । ତତେ ପରା ଅନେକବାର କହିଛି ଯେ' ଦୁନିଆରେ ଏମିତି କିଛି ଘଟଣା ନାହିଁ, ଯାହା ମୂଳରେ ବୈଜ୍ଞାନିକ କାରଣ ନାହିଁ ।"

ବୁଲୁ—"ତେବେ ସେଇ ବିଷୟରେ ଟିକିଏ ବୁଝାଇ ଦେଲେ ତ' ଜେଜେଙ୍କ ସାଥିରେ ମୋର ମିଳାମିଶା ହୋଇଯାଆନ୍ତା । ମୁଁ ସିନେମା ଗୀତ ଶୁଣିବା ଦେଖିଲେ ସେ ଆଉ ବିରକ୍ତ ହୁଅନ୍ତେ ନାହିଁ ।"

ଟୁଲୁ କହିଲା—"ଆମକୁ ବଞ୍ଚାଇ ରଖିବା ପାଇଁ ଆମ ଶରୀରକୁ ସଦାବେଳେ ବିବିଧ ରାସାୟନିକ କ୍ରିୟା ପ୍ରକ୍ରିୟା ଲାଗିରହିଛି । ସେଗୁଡ଼ିକ ସାଧାରଣତଃ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ହାରରେ ହୋଇଥାଏ । ତହିଁରେ କିଛି ବ୍ୟତିକ୍ରମ ଘଟିଲେ ଆମେ ଅସୁସ୍ଥ ହୋଇପଡ଼ୁ । ଏହି ହାରକୁ "ଜୈବିକ ମେଳ" ବୋଲି କହନ୍ତି । ପିଲାଙ୍କ ଠାରେ ଏହି ମେଳ ଦ୍ରୁତ ହୋଇଥାଏ । ବୟସ ବଢ଼ିବା ସାଥେ ସାଥେ ତାହା ଧୀର ହୋଇ ଆସେ । ସେଥିପାଇଁ ଆମ ମନର ଗତି ମଧ୍ୟ ସେହି ଅନୁସାରେ ବଦଳେ । ତେଣୁ, ପିଲାଦିନେ ଆମେ ଚଞ୍ଚଳ ଥାଉ ଓ ବଡ଼ ହୋଇଗଲେ କ୍ରମେ ଧୀରସ୍ଥିର ହେଉ । ବିଭିନ୍ନ ବୟସରେ ଭିନ୍ନ ଭିନ୍ନ ଗୀତ ଭଲ ଲାଗିବା ମୂଳରେ ଏହି କାରଣ ହିଁ ରହିଛି । ପିଲାମାନଙ୍କର "ଜୈବିକ ମେଳ" ଦ୍ରୁତ ହୋଇଥିବାରୁ ଧୀର ଗତିରେ ବୋଲାଯାଉଥିବା ଗୀତ ସହ ସେମାନଙ୍କର ତାଳ ମିଳେ ନାହିଁ । ସେପରି ଗୀତ ପିଲାମାନଙ୍କୁ ଭଲ ଲାଗେନାହିଁ । ବଡ଼ମାନଙ୍କର "ଜୈବିକ ମେଳ" ସହ ଏଭଳି ଗୀତର ତାଳ ମିଳେ । ତେଣୁ ସେମାନେ ଏହାକୁ ପସନ୍ଦ କରନ୍ତି ।"

ଟୁଲୁ ଏତିକି କହି ଚୁପ୍ ହୋଇଗଲା । ଜେଜେ ତା' କଥା ମନ ଦେଇ ଶୁଣୁଥିଲେ । ଏବେ ସେ ବୁଲୁ ଆଡ଼କୁ ମୁହଁ ଫେରାଇ ପଚାରିଲେ—"କ'ରେ, ଏ ଜୈବିକ ମେଳ କ'ଣ କିଛି ବୁଝିଲୁ ?"

ବୁଲୁ ହସି ଦେଇ ଉତ୍ତର ଦେଲା—"ହୁଁ...ସେମିତି ଟିକେ, ଟିକେ..."

ଜେଜେ—"କଥାରେ ଅଛି ପରା—'ଅଳ୍ପ ବିଦ୍ୟା ଭୟଙ୍କରୀ' । ବରଂ, ଭାଇକୁ ପଚାରୁଥା, ସେ ଭଲକରି ବୁଝାଇଦେବ ।"

ତାଙ୍କ କଥାରୁ ଟୁକୁ ବୁଝିପାରିଲା ଯେ' ଜେଜେ 'ଜୈବିକ ମେଳ' କ'ଣ ବୁଝିପାରି ନାହାନ୍ତି, ସେ କଥା ସେ ଜାଣିବାକୁ ଚାହାନ୍ତି । ତେଣୁ ସେ କହିଲା—"ତା' ପଚାରିବା ଆଉ ଦରକାର କ'ଣ ? ସେ ଯେତେ-ବେଳେ କହୁଚ ଭଲ କରି ବୁଝିପାରିନି ବୋଲି, ମୁଁ ବୁଝେଇଦେଉଚି ।"

"ଗୀତର ଯେପରି ଛନ୍ଦ ବା ସ୍ୱରର ମେଳ ଥାଏ, ସଜୀବମାନଙ୍କ ଶରୀରର କ୍ରିୟା ପ୍ରକ୍ରିୟାମାନଙ୍କର ମଧ୍ୟ ସେହିପରି ମେଳ ଥାଏ । ଉଦାହରଣ ସ୍ୱରୂପ, ଆମ ହୃତ୍‌ପିଣ୍ଡ ସ୍ପନ୍ଦିତ ହେବା, ଆଖି ପଲକ ପଡ଼ିବା, ନିଶ୍ୱାସ ପ୍ରଶ୍ୱାସ ନେବା ଇତ୍ୟାଦି ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ହୋଇଥାଏ । ସେହିପରି ଅଭ୍ୟାସ ଉପରେ ନିର୍ଭର କରି ଦିନର ଗୋଟିଏ ଗୋଟିଏ ସମୟରେ ଆମେ ଖାଇବା, ଶୋଇବା, ଉଠିବା, ପାଇଖାନା ଯିବା ଆଦି କାମ କରିଥାଉ । ଅନ୍ୟ ସମୟରେ ତାହା କଲେ ଆମକୁ ଖରାପ ଲାଗେ ଏବଂ ଆମେ ଅସୁସ୍ଥ ଅନୁଭବ କରୁ । କାରଣ, ଅଭ୍ୟାସଦ୍ୱାରା ଆମ ଶରୀର ସେହି ସମୟରେ ସେହିସବୁ କାର୍ଯ୍ୟ କରିବାକୁ ଅଭ୍ୟସ୍ତ ହୋଇପଡ଼ିଥାଏ ।

"ଅନ୍ୟ ଜୀବ ଓ ଉଦ୍‌ଭିଦମାନଙ୍କ କ୍ଷେତ୍ରରେ ମଧ୍ୟ ଏପରି ଘଟିଥାଏ । ସେଥିପାଇଁ ଗୋଟିଏ ଜାତିର ଫୁଲ ପ୍ରତିଦିନ ସେଇ ଗୋଟିଏ ସମୟରେ ଫୁଟେ ଓ ଗୋଟିଏ ସମୟରେ ମଉଳେ । ସଜୀବ ଶରୀରର କ୍ରିୟା ପ୍ରକ୍ରିୟାରେ ଛନ୍ଦ ବା ମେଳ ଥିବାର ଏହାସବୁ ହେଲା ପ୍ରମାଣ ।"

ଟୁକୁ ପାଟିରୁ କଥା ନସରୁଣୁ ଜେଜେ କହି ପକାଇଲେ—"ହେଲା ଯେ'... କିନ୍ତୁ, ଶରୀରର 'ଜୈବିକ ମେଳ' ସହ ସଙ୍ଗୀତର ଛନ୍ଦ ବା ମେଳ କିପରି ଖାପ୍ ଖାଏ, ସେ କଥାତ' କିଛି କହିଲୁ ନାହିଁ ।"

ଟୁକୁ—"ଆଗରୁ କହିଛି ଯେ, ବୟସ୍କମାନଙ୍କ 'ଜୈବିକ ମେଳ' ଧୀର । ସେମାନଙ୍କଠାରେ ଏହାର ସମୟ ଏକକ ପ୍ରାୟ ୦·୭୫ ସେକେଣ୍ଡ ହୋଇଥିବାର ହିସାବରୁ ଜଣାପଡ଼ିଛି । ଏତିକ ସମୟରେ ସେମାନଙ୍କର ଅଧିକାଂଶ ଶାରୀରିକ ଓ ମାନସିକ ପ୍ରକ୍ରିୟାର ପୁନରାବୃତ୍ତି ହୁଏ । ଉଦାହରଣ ସ୍ୱରୂପ, ଜଣେ ବୟସ୍କ ଲୋକର ହୃତ୍‌ସ୍ପନ୍ଦନ ପ୍ରାୟ ୦·୮ ସେକେଣ୍ଡ ଏବଂ ମାନସିକ ପ୍ରକ୍ରିୟା ପ୍ରାୟ ୦·୭୫ ସେକେଣ୍ଡ ନେଇଥାଏ ।

ସେଥିପାଇଁ ସେକେଣ୍ଡକୁ ୭୫ରୁ ୮୦ଟି ସ୍ପନ୍ଦନ ସୃଷ୍ଟି କରୁଥିବା ଗୀତ ସେମାନଙ୍କ ଶାରୀରିକ ଓ ମାନସିକ ପ୍ରକ୍ରିୟା ଉପରେ କୌଣସି ଖରାପ ପ୍ରଭାବ ପକାଏ ନାହିଁ । ସେମାନଙ୍କ ପାଇଁ ଏ ଗୀତକୁ "କ୍ଳୀବ ସଂଗୀତ" ବୋଲି କୁହାଯାଏ । କିନ୍ତୁ ଗୀତର ସ୍ପନ୍ଦନହାର ସେଥିରୁ ଅଧିକ ହେଲେ ତାହା ତାଙ୍କୁ ଉତ୍ତେଜକ ମନେହୁଏ । ଏହା ତାଙ୍କର ହୃତ୍‌ସ୍ପନ୍ଦନ, ନିଶ୍ୱାସ ପ୍ରଶ୍ୱାସ ଇତ୍ୟାଦିର ଗତିକୁ ବଢାଇ ଦିଏ । ସେହିପରି ତହିଁରୁ ଧୀର ସଙ୍ଗୀତ ସେଗୁଡ଼ିକର ଗତି ହ୍ରାସ କରାଏ ।

ପିଲାମାନଙ୍କ ପାଇଁ ଏହା କିନ୍ତୁ ଅଲଗା । ସେମାନଙ୍କର 'ଜୈବିକ ମେଳ' ଦ୍ରୁତ । ତେଣୁ ବଡ଼ମାନଙ୍କ ପାଇଁ ଯାହା 'କ୍ଳୀବ ସଙ୍ଗୀତ' ତାହା ସେମାନଙ୍କୁ ଧୀର ମନେହୁଏ । ସେମାନେ ଏହା ପସନ୍ଦ କରନ୍ତି ନାହିଁ । ଅନ୍ୟ ଭାବରେ ପିଲାମାନଙ୍କ ପାଇଁ ଯାହା 'କ୍ଳୀବ ସଙ୍ଗୀତ' ବଡ଼ମାନଙ୍କ ପାଇଁ ତାହା ଉତ୍ତେଜକ । ତେଣୁ ସେମାନେ ମଧ୍ୟ ଏହା ପସନ୍ଦ କରନ୍ତି ନାହିଁ ।"

ବୁନୁ ଓ ଜେଜେ ଠିକୁକୁ ଏକ ଲୟରେ ଶୁଣି ରହିଥିଲେ । ଏବେ ସେମାନେ ମୁହଁ ଫେରାଇଲେ । ସେଇ ଅବସରରେ ବୁନୁ ଜେଜେଙ୍କୁ କହିଲା—"ଏଥର ପୁରା କଥାଟା ବୁଝିଲ ତ' ?"

ଜେଜେ ପାକୁଆ ପାଟିରେ ହସ ଫୁଟାଇ ଉତ୍ତର ଦେଲେ—"ହଁ..."

ବୁନୁ କହିଲା—"ତା'ହେଲେ ଦ୍ରୁତ ଛନ୍ଦରେ ବୋଲା ଯାଉଥିବା ସିନେମା ଗୀତକୁ ଆମେ କାହିଁକି ପସନ୍ଦ କରୁ ତାହା ଜାଣିଲ । ଆମେ ସେସବୁ ଶୁଣିଲେ ତୁମେ ଏଣିକି ଆଉ ସେପରି ବିରକ୍ତ ନ ହୁଅ... "

ଜେଜେ ହସି କହିଲେ ହେଲେ—ସେପରି ଗୀତର ମୋ' ଉପରେ କିପରି ଖରାପ ପ୍ରଭାବ ରହିଛି ସେକଥା ତ' ତୁ ବୁଝିଲୁ । ତେଣୁ ମୁଁ ଘରେ ଥିଲାବେଳେ ଆଉ ସେମିତି ସେପରି ଗୀତ ନବାଜେ..."

—

# ମେଜିକ୍ ଖେଳରେ ବିଜ୍ଞାନ

ସେ' ଦିନ ରବିବାର । ଭାଇଙ୍କ ସାଥିରେ ଟୁକୁନା, ବାବୁଲ୍, ଲିଲି ଓ ମିନି କେନ୍ଦ୍ରାପଡ଼ା ଯାଇଥିଲେ ମେଜିକ୍ ଦେଖି । ତାଙ୍କ ଘର ମଫସଲ ଗାଁରେ । ସେମାନେ ମେଜିକ ଖେଳ ଦେଖିସାରି ଚାଲି ଚାଲି ଗାଁକୁ ଫେରୁଥାନ୍ତି । ସବୁରି ମନରେ ଆନନ୍ଦ । ହସ ଖୁସି ଭିତରେ ଆଲୋଚନା ଚାଲିଥାଏ ମେଜିକ୍ ଓ ମେଜିକ୍‌ବାଲା କଥା । ପ୍ରତ୍ୟେକେ ନିଜ ନିଜର ମତ ଦେଉଥାନ୍ତି । କିଏ କହୁଥାଏ ମେଜିକ୍‌ବାଲା ବହୁତ ମନ୍ତ୍ର ଜାଣିଛି ତ' ଆଉ କିଏ କହୁଥିଏ ସେଥିରେ ମନ୍ତ୍ରଯନ୍ତ୍ର କିଛି ନାହିଁ—ଖାଲି ଯାହା ହାତ ସଫେଇ କାମ ।

କ୍ରମେ ଏଇ ଦୁଇଟି ମତକୁ ନେଇ ପିଲାମାନେ ଦୁଇଦଳ ହୋଇଗଲେ । ଟୁକୁନା ଓ ଲିଲି ପ୍ରଥମ ମତକୁ ଏବଂ ବାବୁଲ ଓ ମିନି ଦ୍ୱିତୀୟ ମତକୁ ସମର୍ଥନ କଲେ । ତା'ପରେ ଆରମ୍ଭ ହେଲା ଯୁକ୍ତିତର୍କ ।

ବାବୁଲ ପଚାରିଲା—"ଆଚ୍ଛା, ତମେ ଏହାକୁ ମନ୍ତ୍ରଯନ୍ତ୍ର ବୋଲି କିପରି ଜାଣିଲ ?"

ଟୁକୁନା ଜବାବ ଦେଲା—"ମେଜିକ୍‌ବାଲା ଆଖି ଆଗରୁ ଚନ୍ଦନ ଗୁଣ୍ଡାକ କିମିତି ଉଭାନ କରିଦେଲା ଦେଖିଛୁ ତ' ? ମନ୍ତ୍ର ବିନା ତାହା କିପରି ସମ୍ଭବ ?"

ମିନି "ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ବିଭିନ୍ନ କୌଶଳ କରି ଚନ୍ଦନଗୁଣ୍ଡାକୁ ଲୁଚାଇ ଦେଲେ ତାହା ଉଭାନ ହୋଇଗଲା···।"

ଲିଲି—"ହୁଁ···ଖାଲି କହିଦେଲେ ହେଲା···? ତୋ'ର ଶେଷ ଖେଳଟି ମନେଅଛି ତ' ? କଣ୍ଢାଲୁ ଦେଖି ଏତେ ବଡ଼ ବାକ୍ସଟାକୁ ଶୂନ

ଶହ ଲୋକଙ୍କ ଆଗରୁ, ଆଳୁଅ ଭିତରେ କି' କୌଶଳ କରି ଲୁଚେଇ ଦେବା ସମ୍ଭବ ହେବ ? ପୁଣି କିଛି ସମୟ ପରେ ଦେଖିଲା ବେଳକୁ ବାକ୍ସଟା ଯେଉଁଠି ସେଇଠି, ଆଗଭଳି । ମନ୍ତ୍ର ବିନା ଏହା କିହେବ କିପରି ?''

ଏସବୁ ଭାଇଙ୍କୁ ଭାରି ମଜାଲାଗୁଥାଏ । ମେ ଚୁପ୍‌ଚାପ୍ ଶୁଣୁଥାନ୍ତି । ଦେଖୁଥାନ୍ତି କିଏ କିପରି ଯୁକ୍ତି କରିପାରୁଛି । ଶେଷକୁ ସେ ଆଉ ସମ୍ଭାଳି ନପାରି କହିଲେ—''ବୁଝିଲ ପିଲାଏ, ଯେଉଁ ମେଜିକ୍ ଖେଳଟି କଥା ଲାଗି କହୁଛି ସେଥିରେ ମନ୍ତ୍ରତନ୍ତ୍ର କିଛି ନାହିଁ ।''

ଭାଇଙ୍କ କଥାରେ ବାବୁଲା ଓ ମିନି ତାଳମାରି ନାଚି ଉଠିଲେ । ସେମାନେ ଏକ ସାଙ୍ଗରେ କହିଲେ—''ଆମେ ତ' ସେଇଆ କହୁଚୁ— ଇଏ ଖାଲି ହାତ ସଫେଇ ।''

ଭାଇ—''ତା' ବି' ନୁହେଁ... ଏଇଟା ପୁରାପୁରି ବିଜ୍ଞାନର ଜାଦୁ ।''

ପିଲାଏ ଏକସଙ୍ଗରେ ପାଟି କରି ଉଠିଲେ—''କିମିତି ?''

ଭାଇ ଆରମ୍ଭ କଲେ—''ପରଦା ଉଠିଲାବେଳକୁ ତମେ ଦେଖିଲ ଷ୍ଟେଜ ଉପରେ ଲାଲ ରଙ୍ଗର ବାକ୍ସଟିଏ ରହିଛି । ମେଜିକ୍‌ବାଲା ତାକୁ କାଉଁରୀ ହାଡ଼ ଛୁଆଇଁ ଦେଲାରୁ ତାହା ଆଖି ଆଗରୁ ଉଭାନ୍ ହୋଇଗଲା? ଏଥିରେ ଲୋକେ ମନେକଲେ ଯେ ମନ୍ତ୍ର ଯୋଗୁଁ ଏପରି ହେଲା । ଏଇଆ ତ' ସେ ମେଜିକ୍ ?''

ପିଲାଏ—''ହଁ... ''

ଭାଇ—''କିନ୍ତୁ, ପ୍ରକୃତରେ କାଉଁରୀହାଡ଼ ଛୁଆଁଇବା ଥିଲା ସମସ୍ତଙ୍କୁ ଭୁଲାଇବା ପାଇଁ ଏକ ଛଳନା । ତମେ ସବୁ ଲକ୍ଷ୍ୟ କରିଥିବ ଯେ, ଏଇ ସମୟ ଭିତରେ ଷ୍ଟେଜ୍‌ରେ ଆଗରୁ ଜଳୁଥିବା ଧଳା ଆଲୁଅ ବଦଳରେ ଲାଲ୍ ଆଲୁଅ ଜଳିବାକୁ ଆରମ୍ଭ କରିଥିଲା । ଏହି ଲାଲ୍ ଆଲୁଅ ଯୋଗୁଁ ହିଁ ଲାଲ ବାକ୍ସଟି ଅଦୃଶ୍ୟ ହୋଇଯାଇଥିଲା ।''

ପିଲାମାନେ ଭାଇଙ୍କ କଥା ଠିକ୍ ଧରି ପାରିଲେ ନାହିଁ । ଲାଲ୍ ଆଲୁଅ ଲାଲ୍ ବାକ୍ସଟାକୁ ଉଭାନ୍ କରିଦେଲା କିପରି ? ତେଣୁ ବାବୁଲା

ପଚାରିଲା—ଏହା ହେଲା କେମିତି ?”



... ଭାଇ ଉତ୍ତର ଦେଲେ—“ତାହା ବୁଝିବାକୁ ହେଲେ ପ୍ରଥମେ ଆଲୋକ ବିଷୟରେ କେତୋଟି କଥା ଜାଣିବା ଦରକାର । ମୁଁ ଆଗ ସେଇ କଥା କହୁଛି ।”

ସେତେବେଳକୁ ସେମାନେ ଆସି ଲୁଣାନଈ ବାଲିରେ ପହଞ୍ଚି ଯାଇଥାନ୍ତି । ଖରାଦିନ । ଶୁଖିଲା ନଈ ଖାଲି ଯାହା ସରୁ ଧାରେ ପାଣି ବୋହି ଯାଉଥାଏ । ଘର ଆଉ ଅଳ୍ପ ଦୂର ବାକି । ସଞ୍ଜବେଳର ଥଣ୍ଡା ପବନ ବେଶ୍ ଆରାମ ଲାଗୁଥାଏ । ଆକାଶରେ କେତୋଟି ତାରା ଦେଖା ଦେଇଥାନ୍ତି ।

ଲିଲି ପ୍ରସ୍ତାବ ଦେଲା—“ଏଇଠି ଟିକେ ବସି ପଡ଼ିଲେ ଭଲ ହୁଅନ୍ତା ନାହିଁ ? ଗପ ଶେଷକରି ଘରକୁ ଯାଆନ୍ତେ ।”

ସମସ୍ତଙ୍କ ବୋଧହୁଏ ସେଇ ଇଚ୍ଛା ଥିଲା । ଏଣୁ ତା’କଥାରେ ସମସ୍ତେ ରାଜି ହୋଇଗଲେ । ପାଣିଧାର ପାଖକୁ ଲାଗି ବସି ପଡ଼ିଲେ ଭାଇ

ଏବଂ ପିଲାଏ ତାଙ୍କ ଗୁରପାଖ ବେଢ଼ି ବସିଲେ । କିଏ ପକେଟରୁ ବାଦାମଭଜା ପୁଡ଼ିଆ ତ' ଆଉ କିଏ ଚକୋଲେଟ୍ ।

ଭାଇ ଗପ ଆରମ୍ଭ କଲେ—"ଆଚ୍ଛା କହିଲ ପିଲାଏ, ଆଲୋକ କଣ ?"

ବାବୁଲି ଉତ୍ତର ଦେଲା—"ତାହା ଏକ ପ୍ରକାର ଶକ୍ତି ।"

ଭାଇ—"ଠିକ୍ କଥା । ଏ ଶକ୍ତି ଗୋଟିଏ ଜାତୀୟ ତରଙ୍ଗ ନେଇ ଗଠିତ । ତାହାକୁ କହନ୍ତି ବିଦ୍ୟୁତ୍ ଚୁମ୍ବକୀୟ ତରଙ୍ଗ । ବିଭିନ୍ନ ରଙ୍ଗର ଆଲୋକ ବିଭିନ୍ନ ଲମ୍ବର ତରଙ୍ଗ ନେଇ ଗଢ଼ା । ଅର୍ଥାତ୍ ନୀଳ ଆ ଲୋକର ଥିବା ତରଙ୍ଗ ଗୁଡ଼ିକର ଦୈର୍ଘ୍ୟ, ଲାଲ୍ କିମ୍ବା ବାଇଗଣୀ ଆଲୋକ ଠାରୁ ଅଲଗା ।

ତମେ ଜାଣିଛ ସୂର୍ଯ୍ୟ କିରଣ ଭଳି ଧଳା ରଙ୍ଗର ଆଲୋକରେ ସାତଟି ରଙ୍ଗର ଆଲୋକ ମିଶିକରି ଥାଏ । ଆମେ କେବଳ ଏଇ ସାତୋଟିକୁ ଦେଖିପାରୁ । କାରଣ, ଆମ ଆଖି ସେଥିରୁ ସାନ କିମ୍ବା ବଡ଼ ତରଙ୍ଗ ଲମ୍ବର ବିଦ୍ୟୁତ୍ ଚୁମ୍ବକୀୟ ତରଙ୍ଗ ଗୁଡ଼ିକୁ ଧରିପାରେ ନାହିଁ । ସେପରି ଆଲୋକ ଆମେ ଦେଖି ପାରୁନାହିଁ । ଉଦାହରଣ ସ୍ୱରୂପ, ଅତି ଘନ ବାଇଗଣୀ ବା "ଅଲ୍ଟ୍ରା ଭାଓଲେଟ୍" ଆଲୋକକୁ ଆମେ ଦେଖିପାରୁନା । କାରଣ, ଏହାର ତରଙ୍ଗଲମ୍ବ ନିହାତି ସାନ ।

ଧଳା ରଙ୍ଗର ଆଲୋକ କୌଣସି ବସ୍ତୁ ଉପରେ ପଡ଼ିଲେ, ତାହା ସେଥିରୁ କିଛି ଶୋଷି ନିଏ ଏବଂ ଅବଶିଷ୍ଟକୁ ପ୍ରତିଫଳନ କରିଦିଏ । ବସ୍ତୁଟି ଯେଉଁ ରଙ୍ଗକୁ ପ୍ରତିଫଳନ କରେ ତାହା ଆମକୁ ସେହି ରଙ୍ଗର ଦେଖାଯାଏ । ଯଦି ତାହା କୌଣସି ରଙ୍ଗ ଶୋଷଣ ନକରେ ତା'ହେଲେ ଧଳା ଏବଂ ସବୁ ରଙ୍ଗ ଶୋଷଣ କରିଦେଲେ କଳା ଦେଖାଯାଏ । ଗୋଟିଏ ବସ୍ତୁ ଧଳାରଙ୍ଗର ଆଲୋକରୁ କେଉଁ ରଙ୍ଗ ଶୋଷଣ କରିପାରିବ ତାହା ତହିଁରେ ଥିବା ଅଣୁ ପରମାଣୁଙ୍କର ଗୁଣ ଉପରେ ନିର୍ଭର କରେ । ତମେ ମେଳାକ୍‌ରେ ଦେଖିଥିବା ଲାଲ୍ ବାକ୍ସଟି ଧଳା ଆଲୋକରେ ଥିବା ସାତୋଟିଯାକ ରଙ୍ଗରୁ କେବଳ ଲାଲ୍‌ଟିକୁ ପ୍ରତିଫଳନ କରୁଥିଲା, ଅନ୍ୟଗୁଡ଼ିକୁ ଶୋଷିନେଉଥିଲା ।"

ଭାଇଙ୍କ ପାଖରୁ କଥା ଛଡ଼େଇନେଇ ମିନା ପଚାରିଲା—"ତମେ କହୁଚ ଯେ, ଆମ ଆଖି ମୋଟେ ସାତପ୍ରକାର ରଙ୍ଗର ଆଲୋକ ଦେଖି ପାରେ । ଏହା ସହିତ ଧଳା ଓ କଳାକୁ ମିଶାଇଲେ ହେଲା ନ' ପ୍ରକାର । ତା'ହେଲେ ତ' ଦୁନିଆର ସବୁ ଜିନିଷ ଏଇ ନ'ରଙ୍ଗର ହୋଇଥାନ୍ତେ..."

ଭାଇ କହିଲେ—"ପ୍ରକୃତରେ ସେଇ ସାତଟି ହେଉଚି ବିଶୁଦ୍ଧ ରଙ୍ଗ—ଅନ୍ୟଗୁଡ଼ିକ ସବୁ ମିଶା । ଯେମିତି ସବୁଯାକ ରଙ୍ଗ ମିଶିଲେ ଧଳାରଙ୍ଗ ହେଉଛି, ସେମିତି ଏଥିରୁ ଦୁଇଟି ତିନୋଟି ମିଶି ଅନ୍ୟ ରଙ୍ଗସବୁ ସୃଷ୍ଟି କରନ୍ତି ।"

ଲିଲି ଏପର୍ଯ୍ୟନ୍ତ ଚୁପ୍‌ଚାପ୍ ବସି ଗପ ଶୁଣିବା ସଙ୍ଗେ ସଙ୍ଗେ ବାଲିରେ ଗାରକାଟି ଖେଳୁଥିଲା । ଏଥର ସେ ମୁହଁ ଖୋଲିଲା—"ବାଃ... ଆମେ ତ' ଡ୍ରିଙ୍କିଂ ଶାଳରୁ ଆରମ୍ଭ କରି ଯାଇ ଢେଙ୍କାନାଳରେ ପହଞ୍ଚି ଗଲୁଣି । ଏବେ ଅସଲ କଥାଟା ପଡ଼ୁ—ସେ ମେଜିକ୍‌ବାଲା, ବାକ୍ସଟିକୁ ଉଭାନ କରିଦେଲା କପରି ?"

ତା' କଥା ଶୁଣି ସମସ୍ତେ ହସି ଉଠିଲେ । ଭାଇ ହସୁ ହସୁ କହିଲେ—"ଆଚ୍ଛା କହୁଚି ଶୁଣ୍ । ପରଦା ଉଠିଲା ବେଳକୁ ଷ୍ଟେଜ୍ ଉପରେ ଧଳା ରଙ୍ଗର ଆଲୁଅ ପଡ଼ୁଥିଲା । ଏଣୁ ବାକ୍ସଟି ସେଥିରେ ଥିବା ସାତୋଟି ରଙ୍ଗରୁ କେବଳ ଲାଲ୍ ରଙ୍ଗଟି ପ୍ରତିଫଳନ କରି ଲାଲ୍ ଦେଖାଯାଉଥିଲା । କିନ୍ତୁ, ପରେ ଯେତେବେଳେ ଷ୍ଟେଜ୍‌ରେ ଲାଲବତି ଜଳିଉଠିଲା, ସେତେବେଳେ ବାକ୍ସଟି ପ୍ରତିଫଳିତ କରୁଥିବା ଲାଲ୍ ଆଲୋକ ଏବଂ ବତିର ଲାଲ୍ ଆଲୋକ ଏକାକାର ହୋଇଗଲେ । ଏ ଦୁଇଟି ଆଲୋକର ଘନତ୍ୱ ଯେପରି ଏକା ହେବ ସେଥିପାଇଁ ବ୍ୟବସ୍ଥା କରି ଯାଇଥିଲା—ତେଣୁ ତାହା ଦେଖାଗଲା ନାହିଁ । ଅନ୍ଧାର ରାତିରେ କଳାପୋଷାକ ପିନ୍ଧିଥିବା ଚୋରକୁ ଦେଖିବା ଯେମିତି ସମ୍ଭବ ନୁହେଁ, ଏହା ସେହିପରି କଥା । ପରେ, ଲାଲ୍‌ବତି ଲିଭି, ଧଳାବତି ଜଳିବାରୁ ବାକ୍ସଟି ପୁଣି ଦେଖାଗଲା । ଅତଏବ, ଆମକୁ ତାହା ପ୍ରଥମେ ଉଭାନ୍ ହେଲାଭଳି ଏବଂ ପରେ ପୁନରାୟ ଯଥାସ୍ଥାନରେ ଥିବାର ଜଣାପଡ଼ିଲା ।

ତା'ହେଲେ ଏବେ ତୁମେ କୁହ ଏ ମେଜିକ୍ ମନ୍ତ୍ର ନା' ହାତ ସଫେଇ ନା' ବିଜ୍ଞାନ ଦ୍ୱାରା ସଂଭବ ହେଲା ?''

ସାଇଙ୍କ କଥା ଶେଷ ହେଲା । ପିଲାଏ ଖୁସିରେ ତାଳମାରି ନାଚି ଉଠିଲେ । ସେମାନେ ଏବେ ବୁଝିପାରିଲେ ପ୍ରକୃତରେ 'ଘଟଣା କ'ଣ' । ସେତେବେଳକୁ ଟିକିଏ ରାତି ହୋଇ ସାରିଥାଏ । ଆକାଶରେ ଜହ୍ନ ଉଠିସାରିଥାଏ । ଗପ ଓ ବିଶ୍ରାମ ଯୋଗୁଁ ପିଲାମାନଙ୍କର କ୍ଲାନ୍ତି ମଧ୍ୟ ଦୂର ହୋଇଥାଏ । ସମସ୍ତେ ଉଠି ଘରକୁ ବାହାରିଲେ ।

—

# ଜୁଳୁଜୁଳିଆ ପୋକ

ସନ୍ଧ୍ୟାବେଳ । ଆକାଶ ସାରା ମେଘ ଘୋଡ଼ାଇଛି । ବେଳେ ବେଳେ ଝିପିର ଝିପିର ବର୍ଷା ହେଉଛି । ବିଜୁଳି ଲାଇନ୍ ନାହିଁ । ଚାରିଆଡ଼େ ଘୋର ଅନ୍ଧାର । ମୁହଁକୁ ମୁହଁ ଦିଶୁ ନଥାଏ । ତା'ସାଙ୍ଗକୁ ବେଙ୍ଗମାନଙ୍କର ରଡ଼ି ଓ ଝିଙ୍କାରିର ଝିଁ ଝିଁ ଶବ୍ଦ । କୁନକୁ ବଡ଼ ବ୍ୟସ୍ତ ଲାଗୁଥାଏ । ବୋଉ ଓ ସାନଭାଇ ଯାଇଛନ୍ତି ମାମୁଁ ଘରକୁ । ଘରେ ବାପା ଏକୁଟିଆ । ତାଙ୍କ ସାଥିରେ ତ' ଗପ କରିହେବନି । ଆଲୁଅ ଥିଲେ ଅବା ପଢାପଢ଼ି କରନ୍ତା !

କୁନ ଏମିତି ବ୍ୟସ୍ତ ହେଉଥିଲା ବେଳେ ଝରକା ଦେଇ ଘର ଭିତରକୁ ପଶି ଆସିଲା ଜୁଳୁଜୁଳିଆ ପୋକଟାଏ । ଅନ୍ଧାର ଭିତରେ ଇଷତ୍ ହଳଦିଆ ଆଲୁଅ ବିନ୍ଦୁଟି ତାକୁ ଭାରି ସୁନ୍ଦର ଦେଖାଗଲା । ବାହାରକୁ ଚାହିଁ ଦେଖିଲା ସେମିତିକା ଶହ ଶହ ଜୁଳୁଜୁଳିଆ ପୋକ ଖେଳ ବୁଲୁଛନ୍ତି । ହଠାତ୍ ମନଟା ତାର ବଦଳି ଗଲା । ଆନନ୍ଦରେ ଆର ଘରକୁ ବାପାଙ୍କ ପାଖକୁ ଦଉଡ଼ି ଗଲା ।

ବାପା ମହମବତିଟିଏ ଲଗାଇ ଚିଠି ଲେଖୁଥାନ୍ତି । କୁନ ଦଉଡ଼ି ଆସିବାର ଶବ୍ଦ ଶୁଣି ସେ ମୁଣ୍ଡ ଟେକି ତା'ଆଡକୁ ଚାହିଁ ପଚାରିଲେ —"କିରେ କ'ଣ ହେଲା କି ?"

କୁନ—"ଦେଖିଲଣି ବାପା, ବାହାରେ କେତେ ଜୁଳୁଜୁଳିଆ ପୋକ ?"

ବାପା ବାହାରକୁ ଚାହିଁ ଟିକିଏ ହସି କହିଲେ—"ହଁ, ଏ ଅନ୍ଧାର ରାତିରେ ଭାରି ସୁନ୍ଦର ଦିଶୁଛନ୍ତି ପୋକଗୁଡ଼ିକ ।"

କୁନ ନୀରବରେ ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ବାପା ପୁଣି କହିଲେ—"ଜାଣିଛୁ, ଏମାନଙ୍କ ଦେହକୁ ଆଲୁଅ ଆସେ କେଉଁଠୁ ?"

କୁନ ମନାକଲା ।

ବାପା—"ଆଚ୍ଛା, ବସ୍ ଏଠି, ମୁଁ ବତାଇ ଦେଉଛି ··· "

ଚଉକିଟିଏ ଟାଣି ଆଣି କୁନ ବସି ପଡ଼ିଲା । ବାପା ତାଙ୍କ ଗପ ଆରମ୍ଭ କଲେ—"କହିଲୁ ଦେଖି, ଜୁଳୁଜୁଳିଆ ପୋକର ଲାଞ୍ଜରେ ଥିବା ଆଲୁଅ ଗରମ ନା ଶୀତଳ ?"

କୁନ—"ଶୀତଳ··· ଅନେକ ଥର ତ' ମୁଁ ସେ ଗୁଡ଼ାକ ହାତରେ ଧରି ପକାଏ··· "

ବାପା—"ଜୁଳୁଜୁଳିଆ ପୋକ ଭଳି ଏମିତି ଶୀତଳ ଆଲୁଅ ଦେଉଥିବା ଜୀବ ଆହୁରି ଅନେକ ଅଛନ୍ତି । ଏପରିକି କେତେକ ଶ୍ରେଷ୍ଠ ଶ୍ରେଷ୍ଠ ଉଦ୍ଭିଦମାନଙ୍କ ଠାରୁ ବି' ଏ ଆଲୁଅ ବାହାରିଥାଏ । ସେ ମଧ୍ୟରୁ ଅଧିକାଂଶ ହେଲେ ସମୁଦ୍ରର ଲୁଣିପାଣିର ବାସିନ୍ଦା । ଆଲୁଅ ଦେଉଥିବା ସବୁପ୍ରକାର ଉଦ୍‌ଭିଦ ଓ ପ୍ରାଣୀମାନଙ୍କୁ "ଲ୍ୟୁସିଫେରିସ୍" ବୋଲି କୁହାଯାଏ । ଜୁଳୁଜୁଳିଆ ପୋକ ଏହି ଶ୍ରେଣୀର ଗୋଟିଏ ଜୀବ ।"

ବାପାଙ୍କ ପାଟିରୁ କଥା ଶେଷ ନହେଉଣୁ କୁନ କହି ପକାଇଲା—"ଆଉତ ପ୍ରାୟ ସବୁ ପ୍ରକାର ଆଲୁଅ ଅଳ୍ପବହୁତ ଗରମ । ତେବେ, ଏ ଆଲୁଅ ଶୀତଳ କାହିଁକି ?"

ବାପା—"ହଁ··· ସାଧାରଣତଃ ପ୍ରାୟ ସବୁ ଆଲୁଅ ସାଥିରେ କିଛି ନା' କିଛି ଉତ୍ତାପ ଥାଏ । କିନ୍ତୁ, ସେସବୁ ସମାନ ନୁହେଁ । ଜହ୍ନ ଆଲୁଅ ତ' ପୁଣି ଶୀତଳ । ହେଲେ, ଜହ୍ନ ଆଲୁଅ ଶୀତଳ ହେବାର ଏବଂ ଜୁଳୁଜୁଳିଆ ପୋକର ଆଲୁଅ ଶୀତଳ ହେବାର କାରଣ ଏକା ନୁହେଁ । ତୁ ଜାଣିଛୁ ଯେ' ଜହ୍ନର ନିଜର ଆଲୁଅ ନାହିଁ । ଏହା ସୂର୍ଯ୍ୟକିରଣକୁ ପ୍ରତିଫଳିତ କରେ । ସୂର୍ଯ୍ୟକିରଣ ଜହ୍ନ ଉପରେ ପଡ଼ିଲେ ଜହ୍ନ ସେଥିରୁ ଅଧିକାଂଶ ଉତ୍ତାପ ଶୋଷିନିଏ ଏବଂ କେବଳ ଆଲୁଅକୁ ହିଁ

ପ୍ରତିଫଳିତ କରେ । କିନ୍ତୁ, ଜଳୁଜଳିଆ ପୋକର ଆଲୁଅ ଶୀତଳ ହେବାର କାରଣ ବୁଝିବାକୁ ହେଲେ ପ୍ରଥମେ ଅନ୍ୟାନ୍ୟ ଆଲୁଅ କିପରି ସୃଷ୍ଟି ହୁଏ ତାହା ଜାଣିବା ଦରକାର ।

“ସାଧାରଣ ବତିଟିଏ ଜଳିଲେ ସେଥିରେ ଥିବା ଜାଳେଣୀ ବାୟୁର ଅମ୍ଳଜାନ ସାଥିରେ ମିଶି ରାସାୟନିକ ପ୍ରକ୍ରିୟା ସୃଷ୍ଟି କରେ । ଫଳରେ ସେଥିରୁ ଆଲୁଅ ସାଥିରେ ଉତ୍ତାପ ମଧ୍ୟ ବାହାରେ । ସେପରି ଆଲୁଅ ଉତ୍ତପ୍ତ । କିନ୍ତୁ ଯେଉଁ ରାସାୟନିକ ପ୍ରକ୍ରିୟା ଜଳୁଜଳିଆପୋକ କିମ୍ବା ସେହିଭଳି ଅନ୍ୟ ଜୀବଙ୍କଠାରେ ଆଲୁଅ ସୃଷ୍ଟି କରାଏ, ସେଥିରୁ ଉତ୍ତାପ ବାହାରେ ନାହିଁ । ତେଣୁ ସେପରି ଆଲୁଅ ଶୀତଳ ।”

ବାପା ଏତିକି କହି ଟିକିଏ ନୀରବ ରହିଲେ । ସେହି ଅବସରରେ ଲୁନି ପଚାରିଲା—“ଜଳୁଜଳିଆ ପୋକଠାରେ କ’ଣ କିଛି ଜାଳେଣୀ ଅଛି ?”

ବାପା—“ହଁ...ତାକୁ ଜାଳେଣୀ ବୋଲି କହିଲେ ଚଳିବ । ତାହା ଏକପ୍ରକାର ରାସାୟନିକ ପଦାର୍ଥ । ଫ୍ରାନ୍ସ ଦେଶର ବୈଜ୍ଞାନିକ ରାଫାଲ୍ ଜଳୁଜଳିଆ ପୋକ ଦେହରୁ ପ୍ରଥମେ ଏହା ବାହାର କରିଥିଲେ । ପଦାର୍ଥଟିର ନାମ ହେଲା—“ଲ୍ୟୁସିଫେରିନ୍” । କିନ୍ତୁ, ତାହା ଏକାକୀ ଜଳେ ନାହିଁ । ଏଣୁ ରାଫାଲ୍ ତାହାକୁ ଅଲଗା କରି ଜଳାଇବାକୁ ଯେତେ ଚେଷ୍ଟା କଲେବି ତାହା ଜଳିଲା ନାହିଁ । ଶେଷରେ ଆମେରିକାର ବୈଜ୍ଞାନିକ ନିଉଟନ୍ ହାର୍ଭେ ଏହାର ସମାଧାନ କଲେ । ସେ ଏଭଳି ଶୀତଳ ଆଲୁଅ ଦେଉଥିବା ଛୋଟ ଛୋଟ ସାମୁଦ୍ରିକ ଜୀବ ମାନଙ୍କୁ ନେଇ ପରୀକ୍ଷା କରିବାରୁ ଦେଖାଗଲା ଯେ, ସେମାନଙ୍କ ଠାରେ “ଲ୍ୟୁସିଫେରିନ୍” ସହ ଆଉ ଗୋଟିଏ ରାସାୟନିକ ପଦାର୍ଥ ସାମାନ୍ୟ ପରିମାଣରେ ରହିଛି । ତାହା ହେଲା “ଲ୍ୟୁସି ଫେରିଜ୍” । ଏହା “ଲ୍ୟୁସିଫେରିନ୍”କୁ ବାୟୁରେ ଥିବା ଅମ୍ଳଜାନ ସହ ଜାରଣ ପ୍ରକ୍ରିୟା ଦ୍ୱାରା ଜଳି ଆଲୁଅ ଦେବାରେ ସାହାଯ୍ୟ କରେ ।”

ଜୁନି ପଚାରିଲା—"ଏ ରାସାୟନିକ ପଦାର୍ଥ ଦୁଇଟି କଣ' କେବଳ ପୋକର ଲାଞ୍ଜରେ ଥାଏ... ?"

ବାପା..."ହଁ... ଜୁଳୁଜୁଳିଆ ପୋକର ଲାଞ୍ଜର ଅଗଟି କେତେକ ବିଶେଷ ଧରଣର ଜୀବକୋଷ ନେଇ ଗଠିତ । ଏହା ଅନ୍ୟାନ୍ୟ ଅଙ୍ଗଠାରୁ ଅଧିକ ପରିମାଣରେ ରକ୍ତ ଏବଂ ଅମ୍ଳଜାନ ପାଇଥାଏ । ଏଣୁ ସେ ବିଶିଷ ରାସାୟନିକ ପଦାର୍ଥ ଦୁଇଟି ଓ ଅମ୍ଳଜାନ ସେଠାରେ ସହଜରେ ପ୍ରତିକ୍ରିୟା ସୃଷ୍ଟି କରିପାରନ୍ତି ।"

ବାପା ଏହା କହିସାରି ଚୁପ୍ ହେଲେ । ଜୁନି ତାଙ୍କ ଆଡୁ ମୁହଁ ଫେରାଇ ବାହାରକୁ ଚାହିଁଲା । ଦପ୍ ଦପ୍ ଆଲୁଅ କରି ଜୁଳୁଜୁଳିଆ ପୋକ ଗୁଡ଼ିକ ସେମିତି ଉଡ଼ିବୁଲୁଥାନ୍ତି ।

---